# ଝଡ଼େ-ଝୋଲା

( ୩ )

ଲେଖକ :—

ଶ୍ରୀ ବାସୁଦେବ ମହାପାତ୍ର

ପ୍ରଥମ ସଂସ୍କରଣ

୧୯୫୭




ମୂଲ୍ୟ ଟ ୧ ।

ଫେବ୍ରୁଆରୀ

# ସୂଚିପତ୍ର





# ଭାବେ-ଭୋଳା

## (ତୃତୀୟ ଖଣ୍ଡ)

### ପୁନର୍ଜନ୍ମ

ଜୟ ଜୟ ଜଗନ୍ନାଥ    ଜୟ ଚକାଡୋଳା !
ଜୟ ହେ ବଡ଼ଠାକୁର    ମହା ଶିବଭୋଳା !
ଜୟ ମା ସୁଭଦ୍ରା ଦେବୀ    ଗୃହଁ ଚକ୍ଷ ଫେଇ,
ଜୟ ଜୟ ଦାରୁବ୍ରହ୍ମ    ଶାଳଶୋଳସାଙ୍କ !
ତ୍ରି ତାପେ ବ୍ୟାକୁଳ ପ୍ରାଣ,    ହୁଏ ମୁଁ ବାଉଳ;
ଚରଣ କମଳ ଧରେ    ହେଲା ଶେଷ କାଳ ।
ଷଟ୍‌ପଦେ ମନ-ଷଟ୍‌ପଦ    ରହୁ ସୁଖ-ବାସ,
ଶ୍ରୀମୁଖରୁ ମିଳୁ ଆଜ୍ଞା,    ଆଙ୍କେ ଭକ୍ତ-ଯଶ ।
ପବିତ୍ର ନର୍ମଦାତୀରେ    ରହେ ଗିରବର,
ଜାତିରେ ସେ ରାଜପୁତ,    ଭକତପ୍ରବର ।
ଘରେ ରହିଛନ୍ତି ଅତି    ବୃଦ୍ଧ ପିତାମାତା,
ଗୌରୀ ପତ୍ନୀ, ଗୃହଲକ୍ଷ୍ମୀ,    ସାଧ୍ୱୀ, ପତିବ୍ରତା ।
ତନୟରତନ କୋଳେ,    ଉଦା ତାର ନାମ,
କୁଳର ଉଦୟ ସେ ତ    ସର୍ବଗୁଣଧାମ ।
ପୁତ୍ରବଧୂ ବୁଢ଼ାବୁଢ଼ୀ    ସେବାରେ ନିରତ,
ଘରରେ ସରବେ ସାଧୁ,    ବିଷ୍ଣୁଭକ୍ତିଯୁତ ।

ପିତାମାତା ଗୁଣେ ପୁଅ    ବନ୍ଧୁ ନାମ ଧରେ,
ବାଳକାଙ୍କୁ ଉଦା ପ୍ରାଣେ    ଭକତ ସଙ୍ଗରେ ।
ଭଗବାନ ଦୟାମୟ    ମଙ୍ଗଳବିଧାତା,
ଯାହା ସେ କରନ୍ତି ସବୁ    ମଙ୍ଗଳ ସର୍ବଥା ।
ଏ ବିଶ୍ୱାସ ଗିରବର    ପ୍ରାଣେ ଦୃଢ଼ ଅତି,
ଦେଖାଇ କହନ୍ତି ଛଳ    କେତେ ଦୁଷ୍ଟ ମତି ।
"ଚତୁର୍ବର୍ଗ ସୁଖ ଘରେ    ଥିଲେ ଭରପୂର,
ଏସବୁ କଥା ବାହାରେ    ମୁଖକୁ ସୁନ୍ଦର ।
ପତ୍ନୀ, ପୁଅ, ପିତାମାତା    ରହିଥିଲେ ଘରେ,
କୋଟି କୋଟି ଧାନ ପୂର୍ଣ୍ଣ    ଗୋରୁ ଗୋଶାଳାରେ;
ଲକ୍ଷ୍ମୀ ବିଜେ କରିଥିଲେ    ଗୃହଦ୍ୱାର ପୂରି,
ଏସବୁ କଥା ବାହାରେ,    ନାହିଁ ବାହାଦୂରି ।"
ମିଥ୍ୟା ନୁହେ, ସୁଖବେଳେ    ଥାଏ ଯେ ବିଶ୍ୱାସ,
ଦୁଃଖ ବିପଦ ପଡ଼ିଲେ    ହୁଅଇ ନିକାଶ ।
ଗିରବର ଭାବ ଦୃଢ଼,    ନୁହେ ଟଳିବାର;
ଦୁଃଖେ ସୁଖେ ସେ ବିଶ୍ୱାସ    ସଦା ଏକାକାର ।
ପିତାମାତା ଗଲେ ଚାଲି,    ପୁଅ ମନେ ଭାଳେ,
"ସେବାର ସୌଭାଗ୍ୟ ଲେଖା    ନ ଥିଲା କପାଳେ ।
ମାତାପିତା ଧରା ଧାମେ    ପ୍ରତ୍ୟକ୍ଷ ଦେବତା,
ପିତୃମାତୃ ଭକ୍ତେ ପ୍ରେମେ    ଦେଇନ୍ତି ବିଧାତା ।
ପିତୃସେବା ସାର ଧର୍ମ,    ସେଇତ ସରଗ,
ପିତୃଲୋକେ ତୃପ୍ତ ହେଲେ    ମିଳେ ଅପବର୍ଗ ।
ପିତା ଜୀବନର ମୂଳ,    ରକ୍ତମାଂସ ଦେଇ
ଗଢ଼େ ପିଣ୍ଡ ମାତା, ପ୍ରାଣ-    ଧନ କରିଥାଇ ।

ପିତାମାତା ମନ ଜାଣି      ନ ଚଳେ ଯେ ସୁତ,
ଧିକ ତା ମାନବଜନ୍ମ,      ସେ ତ ଜୀବନ୍ମୃତ ।"
ଗିରବର ଗୁରୁଦୁଃଖ      ସମ୍ଭାଳି ଅନ୍ତରେ,
ବିଭୁଙ୍କ ବିଧାନେ ଶୁଭ      ବୁଝଇ ତତ୍ତ୍ୱରେ ।
କିଛି ଦିନ ପରେ ପୁଅ      ସାଙ୍ଗ ସାଥୀ ମେଳେ,
ସ୍ନାନ କରୁଥିଲା ସୁଖେ      ନର୍ମଦା-ସଲିଳେ ।
ଆଠ ବରଷର ପୁଅ      ବିଭୁରେ ଭକତି,
ସ୍ନାନ, ଧ୍ୟାନ, ବିଭୁପୂଜା      କରେ ନିତି ନିତି ।
ଧଇଲା କୁମ୍ଭୀର, ଗଣ୍ଡେ      ବୁଡ଼ାଇଲା ନେଇ,
'ରକ୍ଷାକର ହେ ଠାକୁର'      ତୁଣ୍ଡୁ ଶୁଭୁଥାଇ ।
ପୁଅର ଚିତ୍କାରେ ମାଆ      ଛାଡ଼ିଲା ବୋବାଳି,
ଧାଇଁଗଲେ ଲୋକେ ପୁଏ      ଖୋଜିଲେ ପହଁରି ।
ଗଭୀର ଗଣ୍ଡେ କୁମ୍ଭୀର      ଅଦୃଶ୍ୟ ହୋଇଲା,
ଫେରିଲେ ବିକଳେ ଲୋକେ      ଉଦା ନ ମିଳିଲା ।
ପୁତ୍ର-ନାଶେ ଜନନୀର      ଫାଟିଯାଏ ହୃଦ,
କାନ୍ଦି ଗୋଷ୍ଠୀ ଫେରେ ଘରେ      ନ ମାନେ ପ୍ରବୋଧ ।
ପୂଜା ନିତ୍ୟକର୍ମ ସାରି      ଶୁଣେ ଗିରବର,
କହେ, "କଲ୍ୟାଣ-ବିଧାନ      ସବୁ ବିଭୁଙ୍କର ।"
ପୁଣି କହେ, "ଏ ସଂସାରେ      କିଏ ବା କାହାର ?
ଜୀବନ ଅସୀମ ପଥେ      ଏ ତ ଚଟିଘର !
ଅଳପ ମିଳନ, ପରେ      ଅନନ୍ତ ଅନ୍ତର,
କିଏ କାହିଁ ଯାଏ, କିଏ      ରଖେ ତା ଖବର !
ଅଦ୍ଭୁତ ଏ ମାୟା ! ଝୁରି      ହେଉ କାହା ପାଇଁ ?
ଏଇ ଦେଖୁଅଛୁ ପର      କ୍ଷଣେ ଦେଖା ନାହିଁ !

ମାଟି-ଘଟ ପଞ୍ଜୁରିକି    ସୁବର୍ଣ୍ଣର ଶୁଆ,
ଭଲ ରଙ୍ଗେ ଭିଆଉଛୁ,    ଭାବବିନୋଦିଆ !
ଶୁଆ ଉଡ଼ିଗଲ, ଖାଲି    ପଡ଼ିଲ ପଞ୍ଜୁରି;
କି ହେବ ମାଟି-ପଞ୍ଜୁରି ?    ଦିଅ ପୋଡ଼ିଜାଳି ।
ପଞ୍ଜୁରିରୁ ଯାଇ ଶୁଆ,    ଆକାଶରେ ହସେ;
ପଞ୍ଜୁରିରୁ ପଞ୍ଜୁରିରେ    ବଳେ କିଆଁ ପଶେ !
ବଡ଼ ତୁ ମନୁଆ ଶୁଆ    ବାରେ ଦେଖ ଭାଳି ।
ପଞ୍ଜୁରିରେ ଥିଲେ ପାଦେ    ଜଡ଼ିବ ଶାଙ୍କୋଳି !
ଉଡ଼ିଯାଆ ଶୁଆ, ସୁଖେ    ସରିଲ ତୋ କାମ;
ଆକାଶରେ ଉଡ଼ି ବାବୁ    ଘୋଷ ରାମନାମ ।
ପଞ୍ଜୁରିକୁ ଦେଲ ଗିଳି    ଭୋକିଲ କମ୍ଭୀର;
ଶୁଆକୁ ନାଶିବ ମୋର    ଶକ୍ତିଅଛି କାର ?
ଉଡ଼ିରେ ଉଡ଼ିରେ ଶୁଆ    ଉଚରୁ ଉଚ୍ଚରେ ।
ବଇକୁଣ୍ଠେ ଭେଟ ଯାଇଁ    ବ୍ରହ୍ମାଣ୍ଡଠାକୁରେ ।
ଯିଏ ଯାହା ଅରଜିଛି    ଭୋଗିବ ମହୀରେ;
ଭୋଗ ଶେଷ ହେଲେ ତାକୁ    କିଏ ରଖିପାରେ ?
ପୁଅର ସରିଲ ଭୋଗ,    ସେ ତ ଗଲ ଚୁଲି,
ମାୟାମୋହୁଁ ମୁକ୍ତିଲଭି    ମୋକ୍ଷ ପନ୍ଥା ଧରି ।
ପୁତ୍ର ପାଇଁ ଜନନୀ ତୁ    ନେତ୍ରୁଁ ବାହୁ ଜଳ;
ଅକାରଣ ଅନ୍ତର୍ଦାହ,    ଅଛି କିବା ଫଳ ?
ସେଦିନ କହିଲେ ପରା    ମହାତ୍ମା ବୁଝାଇ,
"ଏ ସଂସାର ବିଧାତାର    ବଗିଚୁ ହେ ଭାଇ !"
ଆମ କାମ, ବଗିଚୁର    କରୁଥିବା ସେବା;
ଭଲ ଫୁଲ ଫଳ କରି    ପ୍ରଭୁରେ ତୋଷିବା ।

ଭଲ ଫଳ ଦେଖି ସ୍ୱାମୀ, ଯଦି ନିଏ ସୁଖେ,
ମାଳୀ ଦୁଃଖୀ ହେବ କିନା, ସମ୍ଭବ କି ଦୁଃଖେ !
ଉଦ୍ୟାନ ସୁନ୍ଦର, ଶ୍ରେଷ୍ଠ ଫଳ ବଗିଚାର,
ସ୍ୱାମୀ ଇଚ୍ଛାକଲେ, ନେଲେ ସବୁ ତ ତାଙ୍କର !
ଛାଡ଼ ସେ ସକଳ ଚିନ୍ତା, ଦୁଃଖ ପୋଛମନୁ;
ବୃଥା ମୋହେ ନ ଢାଳ ଗୋ ଲୋତକ ନୟନୁ ।
ବିଭୁଙ୍କ ସୃଷ୍ଟିରେ କିଛି ନଷ୍ଟ ନାହିଁ ହୁଏ,
ଏ ସ୍ଥାନରୁ ଯାଇ ଅନ୍ୟ ସ୍ଥାନେ ଦେଖାଦିଏ ।
ସେହିଭଳି ଜୀବର ତ ହୁଏ ନାହିଁ ନାଶ ।
ବିଭୁକୃପାରେ ହୁଏ ତ, ସମ୍ପଦ ବିଶେଷ
ଯେଉଁ ନ ଆସୁଥିବ ଉଦା, ତୁ ଲୋ କିସ ଜାଣୁ ?
ଅକାରଣ କରୁ ଶୋକ, ଦୁଃଖ ପୋଛ ମନୁ ।
ଉଦା ମୋର ଥିଲା ଗୌର ! ପରମ ପ୍ରେମିକ,
ସଂକୀର୍ତ୍ତନ ଢାଳ ସଦା ପୀରତି-ଲୋତକ ।
କୁମ୍ଭୀର ଧଇଲା ଗଲା ରହିଲା ଠାକୁର !
ମୃତ୍ୟୁ-ଦୁଃଖେ ବିଭୁ ମନୁ ନ ଗଲେ ପାଶୋର ।
ସରଗର ଯାତ୍ରୀ ଥିବ ବଇକୁଣ୍ଠଧାମେ,
ଅକାରଣ ଶୋକ କରୁ ମାଆ ପୁତ୍ର ନାମେ ।
ଆମ କର୍ତ୍ତବ୍ୟ ଦେଖିବା ପୁଅର ମଙ୍ଗଳ,
ସୁଖରେ ଆସୁଛି ପୁଅ, ଲୋତକ ନ ଢାଳ ।
ଉଦା-ମରଣର କିବା ଅଛି ଗୋ ଠିକଣା ?
କେଉଁ ସ୍ଥାନେ ଅଛି, ଭଲେ ନ ପଡ଼ୁଛି ଜଣା ।
କେବେ ପୁଣି ମାଆ ପୁଏ ହୋଇପାରେ ଭେଟ
ଶୁଭଦଶା ହେଲେ ଗୌର ! ନ ହୁଅ ଉଚ୍ଛାଟ ।

ଗୌରୀ—କହୁଅଛୁ ମନ ମୋର, ପୁଅ ଅଛୁ ଖାଇ,
ଉଚ୍ଛନ୍ନ ହୋଇଣ ପାଶେ ଆସିବ ସେ ଧାଇଁ ।
ଗିରବର—ମିଳୁ ବା ନ ମିଳୁ ପୁଅ, ଲୋଡ଼ୁଛୁ କିଏ ବା ?
ଯେତେ ଧନ ବନ୍ଧୁ ଦେଲେ, କରୁଥିଲା ସେବା ।
ଏବେ ଆନ ସେବା ଯହିଁ କରନ୍ତି ବିଧାନ,
ସେ ସେବା ବି କରିଯିବା ଦେଇ ପ୍ରାଣ ମନ ।
ସେବା ନ କରି ଯେ ଠକେ ସେହି ତ ପାମର,
ପରଦ୍ରବ୍ୟ ଆତ୍ମଜ୍ଞାନେ ଜନ ହୁଏ ଚୋର ।
'ମୋର ପୁଅ' ଏ ଭାବ ତ ନୁହଇ ସଙ୍ଗତ,
ବନ୍ଧୁସେବା ସାବଧାନେ କରିବା ବିହିତ ।
ଘାଟେ ଯାଇ ଗିରବର ପୁତ୍ରର ସନ୍ଧାନ
କରି ନ ପାରି ଫେରିଲେ ଗମ୍ଭୀର ବଦନ ।
ଗିରବର—ବୁଢ଼ାବୁଢ଼ୀ ଥିଲେ ବଡ଼ କଷ୍ଟ ଥାନ୍ତେ ପାଇ,
କଲ୍ୟାଣ ହୋଇଛୁ ବନ୍ଧୁ ଆଗ ତାଙ୍କୁ ନେଇ ।
ପିତାମାତା ଗଲେ, ପୁଏ ନେଲା ତ କମ୍ପୀର,
ଖେତ କାମେ ଘାଣ୍ଟି ହେବା କିବା ଦରକାର ?
ଭାଗ ଲଗାଇଲେ ବଳ, ଯାହା ମିଳେ ଧାନ,
ଚଳିଯାନ୍ତି ସୁଖେ ପତି- ପତ୍ନୀ ଦୁଇ ଜଣ ।
ଠାକୁରଙ୍କ ସେବାପୂଜା ଚଳେ ରୀତିମତ,
ଧ୍ୟାନ, ପୂଜା କରି ଭକ୍ତ ପଢ଼େ ଭାଗବତ ।
ବନ୍ଧୁସେବାରେ ଗଉରୀ ବୁଡ଼ି ନିରନ୍ତର,
ଭୁଲିଗଲା ଭବ-ଦୁଃଖ, ସନ୍ତୁଷ୍ଟ ଅନ୍ତର ।
ଗିରବର—ଉଦା ଥିଲେ କି ପ୍ରିୟେ ! ଏ ଭଜନ ପୂଜନ
ଦ୍ରବ୍ୟ ସୁଖେ କିଚି ପାରୁ- ଥାନ୍ତା ଆମ ମନ ?

ବନ୍ଧୁ ନେଲେ ପୁଅ, ଆମ୍ଭେ ବୁଡ଼ିଲୁ ଭଜନେ
ସବଂଶ କଲ୍ୟାଣ ଦେଖିଲେ ବନ୍ଧୁଙ୍କ ବିଧାନେ ।
ଗୌରୀ—ସତେ ନାଥ ! ବନ୍ଧୁଙ୍କର ଅପାର କରୁଣା,
ତାଙ୍କ ଯେନ ସୁଖ ହେବେ ନ ହୁଏ ତ ଊଣା ।
ମାତାର ଅନ୍ତରେ କିନ୍ତୁ ଜାଗେ ବାରମ୍ବାର,
ପୁତ୍ରର ମଧୁର ସ୍ମୃତି, ବଦନ ସୁନ୍ଦର ।

× × × × ×

ଉଦାଙ୍କୁ ମୁଖରେ ଧରି ବୁଡ଼ିଲା କୁମ୍ଭୀର,
ତାକୁ ଦେଖି ଗୋଡ଼ାଇଲା କୁମ୍ଭୀର ଅପର ।
ଲାଗିଗଲା ଯୁଦ୍ଧ, ଉଦା ଜନ୍ତୁ ମୁଖୁଁ ଖସି,
ଜଳ ଉପରକୁ ହେଲେ ଉଠିଲା ସେ ଭାସି ।
ଯୋଗକୁ ପାଖେ ନଉକା, ଲୋକେ ତାକୁ ଦେଖି,
ଟେକିନେଲେ ଉପରକୁ, ଆଦରରେ ରଖି ।
ନଉକା ଉପରେ ଉଠେ ମୂର୍ଚ୍ଛିତ ବାଳକ,
ଯତନରେ ସେବା କଲେ ଥିଲେ ଯେତେ ଲୋକ ।

× × × × ×

ସେହି ପ୍ରଦେଶରେ ରାଜା ଥିଲେ ଚନ୍ଦ୍ରସେନ,
ରାଣୀଙ୍କର ମୃତ୍ୟୁ ହେଲା ନ ଥାଇ ସନ୍ତାନ ।
ରାଣୀଙ୍କ ମରଣେ ରାଜା କରନ୍ତି ବିଚାର,
ନେବେ ସନ୍ନ୍ୟାସ, ଛାଡ଼ିବେ ଅସାର ସଂସାର ।
ପିତାଙ୍କର ଗୁରୁ ଆସି ଦେଲେ ଦରଶନ,
ସେ ତ ସିଦ୍ଧ ମହାଯୋଗୀ, ଭକତ-ରତନ ।
ଗୁରୁ—ପଞ୍ଚ ଏକ କରୁ ଯଦି, ସୁଯୋଗ୍ୟ ସନ୍ତାନ,
ମିଳିବ, ଏ ରାଜଗାଦି କରିବ ମଣ୍ଡନ ।

ମାତାପିତା ଭୁଲି ଏଥି / ରହିବ ବାଳକ,
କ୍ଷତ୍ରିୟ ସେ, ଚତୁର୍ଦ୍ଦିଗେ / ବଢ଼ିବ ତା ଟେକ ।
ରାଜଗୁରୁ ସଙ୍ଗେ ରାଜା / ତେଜି କଲେ ବନ,
ସବଧିରେ ହେଲା ତହିଁ / ଯଜ୍ଞ ଅନୁଷ୍ଠାନ ।
ଯଜ୍ଞ ଶେଷେ ରାଜା, ରାଜ- / ଗୁରୁ ନାବେ ବସି
ନର୍ମଦାନଦୀର ଜଳଶୋଭେ / ବାଣ୍ଟୁଥିଲେ ଭୂଷି ।
ବୁଡ଼ନ୍ତ ଉଦାକୁ ଟେକି / ନେଲେ ନାବପରେ;
ଗୁରୁ କହେ, "ବାଳକକୁ / ପାଳ ଯତନରେ ।"
କୁମ୍ଭୀର-କାମୁଡ଼ା ଘାଆ / ନ ଶୁଖେ ଗୋଡ଼ରେ,
ଅଚେତନ ହୋଇ ଉଦା / ରହେ ରାଜଘରେ ।
ଏକୋଇଶ ଦିନେ ଉଦା / ମୂର୍ଚ୍ଛା ହେଲା ଦୂର,
ମିଟିକାଏ ଲୋଚନ ଭୁଲେ / ମାତାପିତା ତାର ।
ସକଳ ଭୁଲିଣ ଉଦା / ମନେ ରଖିଥିଲା,
ନାମ ତାର ଉଦା, ସେ ଯେ / କ୍ଷତ୍ରିୟର ପିଲା ।
କହିଲେ ତାହାକୁ ଲୋକେ, / "ରାଜା ଚନ୍ଦ୍ରସେନ
ତୋହର ଜନକ, / ତୁ ରେ ଏକାଇ ସନ୍ତାନ ।
ଜନନୀ କମଳା ତୋର / ଯାଇଛନ୍ତି ମରି,
ତୁ ରାଜନନ୍ଦନ ସାରା / ଦେଶର ସଞ୍ଚାଳୀ ।
ଉଦୟରାଜ ତୋ ନାମ, / କୁଳକୁ ଉଦୟ;
ଦେଖେ ଦେଖେ ରାଜସୂନୁ ! / ବିଦ୍ୟାର ବିଜୟ ।"
ସୁଯୋଗ୍ୟ ଗୁରୁଙ୍କ ଯତ୍ନେ / ଚଳିଲେ କୁମର;
ଦିନୁଁ ଦିନ ବଢ଼େ ବୁଦ୍ଧି, / ବିବେକ, ବିଚାର ।
ରାଜୋଚିତ କ୍ଷାତ୍ରଗୁଣ, / ପ୍ରଜାଜନ ଦୁଃଖ
ତରଳାଏ ହୃଦ, ଭୁଲି / ଯାନ୍ତି ରାଜସୁଖ ।

ବିଷ୍ଣୁରେ ଭକତି ବଢ଼େ, · ବଚନ ମଧୁର,
ଯେ ଶୁଣଇ ବଶ ହୁଏ, ହୁଏ ଆପଣାର ।
ବିଜୟନଗର ରାଜା କଲେ କନ୍ୟାଦାନ,
ଚତୁର୍ଦ୍ଦିଗେ କୁମରଙ୍କ ବଢ଼ିଲା ସମ୍ମାନ ।
ରାଜ୍ୟେ ଅଭିଷେକ କରି ପୁତ୍ରେ ବନ୍ଧୁମାନେ,
ସନ୍ନ୍ୟାସ ବହିଣି ରାଜା ଚାଲିଗଲେ ବନେ ।

× × ×

ଦୁର୍ଭିକ୍ଷ ପଡ଼ିଲା ଦେଶେ ଗୌଷ୍ଣ ଗିରବର,
ସରିଗଲା ଧନଦ୍ରବ୍ୟ ହେଲେ ହରବର ।
ଠାକୁରଙ୍କ ମାତିଗତି ପାଇଁ ଅନଟନ,
ହେଲା ଅର୍ଥ, ପତିପତ୍ନୀ ଚିନ୍ତାଗ୍ରସ୍ତ ମନ ।
ଶେଷେ ଗୌଷ୍ଣ ସ୍ୱର୍ଣ୍ଣ ଲୋଥ, ଦେବତା ମୂରତି,
ବିପ୍ର ହସ୍ତେ ଦେଇ ଗୃହ ତେଜିଲେ ଦମ୍ପତି ।
ଯାଆନ୍ତି ଯୁଗଳ ଭକ୍ତ ବିଷ୍ଣୁ ନାମ ନେଇ;
ଅଚଳା ଭକତି ହୃଦେ ଚିତ୍ତେ ଭୟ ନାହିଁ ।
ବିଷ୍ଣୁରେ ନିର୍ଭର ସଦା, ବିଷ୍ଣୁପଦେ ଲୟ,
ରାତ୍ରିରେ ବିଟପୀ ତଳେ ନିଅନ୍ତି ଆଶ୍ରୟ ।
କାଳସର୍ପ ଥିଲା ବୃକ୍ଷେ, କଲା ସେ ଦଂଶନ
ଗୌଷ୍ଣ ପାଦେ, ବିଷ କଷ୍ଟେ ଈଶ୍ୱର ସ୍ମରଣ
କରୁ କରୁ, ଗୌଷ୍ଣ ଶେଷେ ମୁଦିଲା ନୟନ,
ଗିରବର ଦେଖେ, ବିଷ୍ଣୁ ମଙ୍ଗଳ ବିଧାନ ।
ରାତିସାରା ପତ୍ନୀ ପାଶେ ବିଷ୍ଣୁ ନାମ ଗାଇ
ଭାବେ-ଭୋଳା ଗିରବର; ରାତି ଗଲା ପାହି ।

ପ୍ରାଚୁଁ ପତ୍ନୀଶବ କନ୍ଧେ • ବହି ଗିରବର,
ବିଷ୍ଣୁ ନାମ ଗାଇ ଗଲେ ନର୍ମଦାର ତୀର ।
ସର୍ପ ଦଂଶିଲେ ଶବକୁ ନ ଦହନ୍ତି କେହି,
ନର୍ମଦାର ସ୍ରୋତ ମାରେ ଦେଲେ ସେ ଭସାଇ ।
ଗଉରୀର ପ୍ରିୟ ଦେହ ଏତେ କାଳ ପରି
ହୋଇଥିଲା ଜୀବନରେ ପୀରତି-ପସରା !
କ୍ଷଣେକ ଗମ୍ଭୀର ମୁଖ, ଗଲେ ସବୁ ଭୁଲି,
ଫେରିଲେ ନର୍ମଦାତୀରୁ ନାମ ବୋଲି ବୋଲି ।
ବୈରାଗ୍ୟ ବଢ଼ିଣ ପ୍ରାଣେ ହେଲା ତୀବ୍ରତମ
ଗିରବର ଭୁଲିଗଲେ ଭୋଜନ-ଶୟନ ।
ବୃକ୍ଷମୂଳେ ବସି ଦିନେ ହୋଇଣ ଆତୁର
କାନ୍ଦି କାନ୍ଦି କହୁଛନ୍ତି, "ପ୍ରଭୋ ! ରକ୍ଷାକର ।
ଅଭୟ ଚରଣ ତଳେ ସ୍ଥାନ ଦିଅ ଦାସେ,'
ଜୀବନ ତ ଧରି ନୁହେ, ଆଉ କିବା ଆଶେ ?
ଡାକୁ ଡାକୁ ଘରେ-ଘେଲା, ହୋଇଲେ ମୂର୍ଚ୍ଛିତ,
କ୍ଷଣକରେ ଫୋଟିଗଲା ସବୁ ଅଦଭୁତ ।
ନର୍ମଦା ଯମୁନା ହେଲା, ବନ-ବୃନ୍ଦାବନ,
ସମ୍ମୁଖରେ ବିସ୍ତାରେ କଦମ୍ବ-କାନନ ।
କୁଞ୍ଜେ ବିରାଜିତ ସ୍ମିତ- ମୁଖେ ବେଣୁପାଣି,
ତ୍ରିଭଙ୍ଗ ସୁନ୍ଦର ପୀତା- ମ୍ବର ଦିବ୍ୟଠାଣି ।
ଶିରରେ ମୟୂରଚୂଳ, ବାହୁରେ କଙ୍କଣ,
ବକ୍ଷେ ବନମାଳ, କଟୀ ରତ୍ନ-ବିଭୂଷଣ ।
ସୁବର୍ଣ୍ଣ ବାଂଶୀ ହାତେ, ବାଜେ ଧୀରେ ଧୀରେ,
ଦୟାଦ୍ର ପରାଣେ ଗୁହ୍ନି- ଛନ୍ଦ ଭକତରେ ।

ଘନଶ୍ୟାମ ଜ୍ୟୋତିଃ-ସ୍ରୋତ     ବାହାରେ ଭିତରେ !
ଫିଟାଏ ଭକତ ଚକ୍ଷୁ     ମହାପ୍ରେମନ୍ଦରେ ।
ନୟନ ପଲକହୀନ,     ଜଡ଼ ହେଲା ଦେହ,
ଖେଳଇ ଅନ୍ତର ଭେଦି     ଅମୃତ-ପ୍ରବାହ ।
ଶ୍ରୀକୃଷ୍ଣ—ଗିରବର ! ପ୍ରିୟତମ     ଭକତ ମୋହର !
ତୋ ବିରହ ସହି ନୁହେଁ,     ବିଦରେ ଅନ୍ତର ।
ଚାଲ ବୃନ୍ଦାବନଧାମେ,     ରହିବୁ ମୋ ପାଶେ,
ହସିବ, ଖେଳିବ ସଙ୍ଗେ     ନିତ୍ୟ ପ୍ରୀତି-ରସେ ।
ପନ୍ହୀ ମଣ ନାହିଁ ତୋର,     ଖାଇଛୁ କୁମର,
ଗୌଣ ଉଦା ହେବେ ଭେଟ     ଦିନେ ସଙ୍ଗେ ତୋର ।
ପୁନକାମନା ଗଉଣା-     ପ୍ରାଣୁ ଛୁଟି ନାହିଁ,
ଛୁଟିଲେ, ଆସିବ ପାଶେ,     ରହ ସୁଖେ ଛୁହ ।
ଜ୍ୟୋତିର୍ମୟ ହୁଏ କ୍ଷଣେ     ଗିରବର ଦେହ,
ଶରୀରୁ ବାହାରି ଖେଳେ     ଆଲୋକସମୂହ ।
ଦିବ୍ୟ ବାଳଗୋପ ତନୁ     ଆଲୋକୁଁ ବାହାରି,
ଶ୍ରୀକୃଷ୍ଣ ଚରଣତଳେ     ପ୍ରେମେ ପଡ଼େ ଟଳି ।
ଭକତବତ୍ସଳ ବକ୍ଷେ     ଭକତେ ଭିଡ଼ିଲେ,
ବୃନ୍ଦାବନ ସହ କ୍ଷଣେ     ଅନ୍ତର୍ହିତ ହେଲେ ।

× × ×

ଗୌଣ ତନୁ ଭାସି ଯାଉ-     ଥିଲା ସ୍ରୋତଜଳେ,
ଅଟକି ରହିଲା ଏକ     ଖିର ତରୁମୂଳେ ।
ସାତ ଦିନ ଦେହ ତହୁଁ     ତଳେ ଥିଲା ରହି,
ବନ ପକ୍ଷୀ, ଜଳଜୀବ     ନ ଛୁଇଁଲେ କେହି ।

ଆଠ ଦିନେ ପୁଣି ଭାସେ ମୂଅରେ ଶରୀର,
ଦେଖିଲେ ଦୂରରୁ କେହ୍ନ ସିଦ୍ଧ ଯୋଗୀବର ।
ପିଣ୍ଡେ ଅଛି ପ୍ରାଣ କ୍ଷଣେ ପାରିଲେ ସେ ଜାଣି,
ଉପରେ ଉଠାଇ ଛିଞ୍ଚି- ଦେଲେ ମନ୍ତ୍ର-ପାଣି ।
ମନ୍ତ୍ର-ପାଣି ପଡ଼ି, ଉଠି ବସଇ ଗଉରୀ,
ଚଳାଇ ନେଲେ କୁଟୀରେ ଯୋଗୀ ହାତଧରି ।
ସିଦ୍ଧଫଳ ଏକ ତାକୁ ଖାଇବାକୁ ଦେଲେ,
'ସଂସାର ବୋଝ ଖସିଲ୍', ନାରୀ ମନେ ଭାଳେ ।
କିଛି କାଳେ ପୂର୍ବସ୍ମୃତି ଆସେ ବାଳା ମନେ,
ସିଦ୍ଧିବଳେ ଯୋଗୀ ସବୁ ବୃତ୍ତାନ୍ତ ଗୋପନେ ।
ଅତୀତର କଥାସବୁ ତାଙ୍କୁ ଗଲ୍ ଜଣା,
ପତି ପରଗତି ଚସ କରନ୍ତି ବର୍ଣ୍ଣନା ।
ପତି କଥା ଶୁଣି ମନେ ଭାବଇ ଗଉରୀ,
"ପତି ଦେବ କହୁଥାନ୍ତି, ବିଭୁ ଯାହା କରି
ସବୁରେ କଲ୍ୟାଣ ଭରି; ମଙ୍ଗଳ ବିଧାତା,
ସବୁବେଳେ ଲାଗେ ତାଙ୍କୁ ଭକତର ଚିନ୍ତା ।
ତାଙ୍କ କଥା ସବୁ ସତ, ମୁହିଁ ସଙ୍ଗେ ଥିଲେ,
ପତି ମୋର ପରଗତି ଏତେ ଅଳ୍ପ କାଳେ
ପାଇଥାଆନ୍ତେ କି କେବେ ? ସବୁ ତୁମ ଦୟା !
ଜ୍ଞାନ-ଜ୍ୟୋତି ଜାଳ ବିଭୁ, ତୁଟୁ-ଭବ-ମାୟା ।"
ଆତ୍ମା ଅମରତ୍ୱ କଥା, ଯୋଗୀ ମୁଖୁଁ ଶୁଣି
ପରାଣ ନାଚଇ ପ୍ରେମେ, ହସଇ ରମଣୀ ।
ଶେଷେ କହନ୍ତି, "ନିକଟେ ଅଛି ପତି ଦେହ,
ସ୍ୱାମୀର ଅନ୍ତ୍ୟେଷ୍ଟି ନିଜେ କର ତୁ ନିର୍ବାହ ।

ବନଦେବୀ ଭକ୍ତେ ଅଛୁ .	ଅତ ହୁଁ ମନେରେ,
ଯାଅ ମାଆ ପ୍ରେତକିଯ୍ଯା	ସାର ଭକ୍ତିଭରେ ।”
କାହୁଁ ମିଳିଗଲେ ଆସି	ବୃଦ୍ଧ ବ୍ରହ୍ମବୃନ୍ଦୀ,
ସେମାନେ ଗଉରୀ ସଙ୍ଗେ	ବନେ ଗଲେ ଚଳି ।
ଗୌରୀ ଦେଖେ ପତି ଦେହ	ବନେ ବୃକ୍ଷତଳେ,
ହବ୍ୟବଧୂ କେହ୍ନ ଦେବୀ	ଜଗି ବସି ଥିଲେ ।
ଗଉରୀଙ୍କୁ ଦେଖି ଦେବୀ	ହେଲେ ଅନ୍ତର୍ହିତ,
ବ୍ରହ୍ମଗୃହୀ ମିଳି ଚିତା	କଲେକ ସଜ୍ଜିତ ।
ପତି ଦେହ ଦାହକର୍ମ	ସର୍ବ ଶୁଭେ ହେଲା,
ନର୍ମଦାର ପୂତ ନୀରେ	ଭସ୍ମ ଭସାଗଲା ।
ସ୍ନାନ ସାରି ଗୌରୀ ଦିଏ	ପ୍ରେତ-ଜଳାଞ୍ଜଳି
ଯେତେ ଚେଷ୍ଟା କଲେ, ଅଶ୍ରୁ	ପଡ଼େ ନେତ୍ରୁ ଗଳି ।
କାସ୍ତ-ବସ୍ତ୍ର, ବୀଣା ଦେଇ	ଗଲେ ବ୍ରହ୍ମଗୃହୀ,
‘ବୁଦ୍ଧଙ୍କ ଶରଣ’ ମନେ	ଭାବଇ ଗଉରୀ ।
ଗେରୁଆ ପିନ୍ଧଣ ବାଳା	ବୀଣା ପ୍ରେମେ ବାଏ,
ଅଜଣା ପଥର ଯାତ୍ରୀ,	ବୁଦ୍ଧ ଗୁଣ ଗାଏ ।
ଯାଉ ଯାଉ ପଥ ପ୍ରାନ୍ତେ	ପଡ଼ଇ ସହର,
ସର୍ବତ୍ର ମଙ୍ଗଳୋତ୍ସବ,	ମହାକୋଳାହଳ ।
ସେହ୍ନି ସେ ନଗରେ ରାଜା	ଚନ୍ଦ୍ରସେନବାସ,
ପୁର୍ବେ ରାଜଗାଦି ଦେଇ	ରଚନ୍ତି ସନ୍ନ୍ୟାସ ।
ଉଦୟରାଜ ମଙ୍ଗଳ	ଅଭିଷେକ ପାଇଁ,
ମହାଉତ୍ସବରେ ଭାଜ	ପଡ଼ୁଥିଲା ଭୂଇଁ ।
ପୁତ୍ରେ ଗାଦି ଦେଇ ଚନ୍ଦ୍ର-	ସେନ ଗଲେ ବନେ,
ପୂର୍ବରାତ୍ରେ ଯୁବରାଜ	ଦେଖନ୍ତି ସ୍ୱପନେ ।

ମାତା ସନ୍ନ୍ୟାସିନୀ ବେଶେ କରନ୍ତି ବର୍ଣ୍ଣନା
ଜୀବନ-ରହସ୍ୟ, ଗୂଢ଼ ସକଳ ଘଟଣା ।
ରାଜା ବନେ ଯିବା ଆଗୁଁ କହିଥିଲେ ପୁଏ,
ନଗରୁ ଆଣିବାଠାରୁ ଅଭିଷେକ ଯାଏ
ସକଳ ବୃତ୍ତାନ୍ତ; ପୁନ ପରାଣ ଉଚ୍ଛନ୍ନ,
ସନ୍ନ୍ୟାସିନୀ ମାଏ କେବେ କରିବ ଦର୍ଶନ ।
ନଗରେ ଢେଙ୍ଗୁରା ଦେଇ ହୋଇଛି ପ୍ରଚାର,
ସନ୍ନ୍ୟାସିନୀ ଦେଖିଲେଇ, ଦେବେ ସମାଚାର ।
× × ×
ନଗରରେ ପାଦ ଦେଉଁ ମାତା ପ୍ରେମେ ଦେଖେ,
ଉଦା ଆସୁଅଛି ଧାଇଁ 'ମାଆ, ମାଆ' ମୁଖେ ।
ମାଆ ପାଦ ଧରି ପ୍ରେମେ ଗଡ଼ଇ କୁମର,
ବକ୍ଷେ ଧରେ ମାଆ ଘରେ, "ଉଦା, ଉଦା ମୋର !
ତୋରେ ମୋରେ ପୁନର୍ଜନ୍ମ କିଏ ବାବୁ ଦେଲା,
ସବୁ ତ ମଙ୍ଗଳମୟ କରୁଣାର ଲୀଳା !"
ପୁତ୍ରବକ୍ଷ ଧୁଏ ମାଆ, ଗଡ଼ାଇ ଲୋତକ,
ପୁଅ ଅଙ୍ଗେ ଅଙ୍ଗେ ଖେଳେ ବିଦ୍ୟୁତ-ଚମକ ।
ଦରବାର ହେଲା ବନ୍ଦ, ଉଠେ ପ୍ରେମରୋଳ,
'ରାଜମାତା' ମାଆଲକ୍ଷ୍ମୀ ଫେରିଛନ୍ତି ପୁର ।
ମାଆ ହାତ ଧରି ପୁଅ ନିଅନ୍ତି ନବରେ,
ସମାଚାର ସବୁ କହୁ- ଛନ୍ତି ଧୀରେ ଧୀରେ ।
ଧୀରେ ଧୀରେ ପୁନ ମୁଖୁଁ ସବୁ କଥା ଶୁଣି,
ପିତା ପରି-ଗତ ମାଆ କହନ୍ତି ବଖାଣି ।
ରାଣୀ ବଧୂ ଆସି ପ୍ରେମେ ନମନ୍ତି ପାଦରେ,
ଶିର ଚୁମ୍ବି ରାଜମାତା ଧରିଛନ୍ତି କୋଳେ ।

“ଏ ଭୋଗ, ଏତେ ବିଭୂତି, ମୁଣି ଏତେ ଦୟା,
କି ହେବ ଭୋଗ-ବିଭୂତି, କାଠ ବିଭୁ-ମାୟା !”
ପୁତ୍ରର ଦର୍ଶନେ ଘୋର ଆସକ୍ତି କଟିଲା,
ବନେ ରହି ଭଜନରେ ମାତା ମନ ଗଲା ।
ପୁତ୍ରର ଆଗ୍ରହେ ମାତା ଶେଷେ ରାଜି ହେଲେ,
ନଗର ଉପାନ୍ତେ ପୁତ୍ର କୁଟୀର ରଚିଲେ ।
ସନ୍ନ୍ୟାସିନୀ ରାଜମାତା ଗଲେ ସବୁ ଭୁଲି,
ବୀଣା ବାଇ ଗାନେ ଗାଇ ବିଭୁ ଗୁଣାବଳୀ ।
ରାଜମାତାଙ୍କର ଯଶ ଦିଗେ ଦିଗେ ଖେଳେ,
ପଦଧୂଳି ନେଇ ଶତ ଶତ ତରିଗଲେ ।
ଧୀରେ ଧୀରେ ପ୍ରାଣେ ପ୍ରେମ ପରକାଷ୍ଠା ଧରେ,
ରାଜମାତା ଧକ୍କା ଦିଏ ବିଶ୍ୱରାଜ-ଦ୍ୱାରେ ।
ଫିଟିଲା ବୈକୁଣ୍ଠ-ଦ୍ୱାର ଆସିଲେ ତ ଧାଇଁ,
ବଇକୁଣ୍ଠନାଥେ ଗୋସାଇଁ ଦେଖେ ପ୍ରେମେ ରହି ।
ନୀଳ ନବଘନ ଶ୍ୟାମ, ନଟବର ଠାଣି,
ଦେଖି ରାଜମାତା ମୁହଁ ନ ଫୁଟଇ ବାଣୀ ।
ଦେଖୁ ଦେଖୁ ସଂଜ୍ଞା ଲୋପ, ନ ପଡ଼େ ପଲକ,
ଅଙ୍ଗେ ଅଙ୍ଗେ ଖେଳିଯାଏ ଅପୂର୍ବ ପୁଲକ ।
ସନ୍ନ୍ୟାସିନୀ ଗଡ଼େ ପ୍ରେମେ ବିଭୁପାଦ ଧରି,
ପିଣ୍ଡ ଛାଡ଼ି ପ୍ରାଣ ଯାଏ ଶ୍ରୀଅଙ୍ଗେ ସଞ୍ଚରି ।
ଉଦୟରାଜ ଜୀବନେ ବିସ୍ତାରେ କୀରତି,
ବିଭୁ ପାଦପଦ୍ମେ ସଦା ସ୍ଥିର ସ୍ୱଚ୍ଛ ମତି ।
ପୁତ୍ର ସମ ପ୍ରଜା ଘେନେ, ରାଜ୍ୟର ମଙ୍ଗଳ
ମାଗେ ସଦା ବିଭୁ-ଦ୍ୱାରେ, ମହା-ପ୍ରେମେ ଭୋଳ ।

ଶେଷେ ସମାଧିରେ ରହି • ତେଜିଲେ ଶରୀର,
ମାତା ପିତା ପୁତ୍ର ହେଲେ ବୃନ୍ଦାବନେ ମେଳ ।



# ଅତଥି ସତ୍କାର

କାଞ୍ଚି ନଗରୀରେ ରହେ ଦ୍ୱିଜ ଦାମୋଦର,
କାଙ୍ଗାଳ ସେ, ନାହିଁ ଘର ଆଶ୍ରୟ କୁଟୀର ।
ସନ୍ତାନ କୋଳକୁ ନାହିଁ ଏକଇ ବ୍ରାହ୍ମଣୀ,
ଭିକ୍ଷା ମାଗି ଦ୍ୱିଜ ଦିଏ ପତ୍ନୀ ହସ୍ତେ ଆଣି ।
ଭଗବାନ ନାମ ନେଇ ବୁଲେ ଦ୍ୱାରେ ଦ୍ୱାରେ,
କିଏ ସୁଖେ ଦେଲେ ମୁଠେ, ଆନ ନାହିଁ କରେ ।
ଦୁଃଖ ନାହିଁ ଦ୍ୱିଜ ମନେ, ସତତ ପ୍ରସନ୍ନ,
ସର୍ବେ ତୋଷଇ ଭାଷି ମଧୁର ବଚନ ।
ଭିକ୍ଷା ଅନ୍ନେ ଭଗବାନେ ପୂଜଇ ସେ ନିତି,
ପ୍ରଭୁ-ପରସାଦ ପ୍ରେମେ ପାଆନ୍ତି ଦମ୍ପତି ।
କେଉଁ ଦିନ ଅଭ୍ୟାଗତ ଆସନ୍ତି ଦୁଆରେ,
ନାରାୟଣ ଜ୍ଞାନେ ତାଙ୍କୁ ପୂଜନ୍ତି ଆଦରେ ।
ଖୁଆଇ ପିଆଇ ପ୍ରେମେ, କରନ୍ତି ଆହାର,
ନ ବଳିଲେ ଉପବାସେ ହୁଏ ନୀରାହାର ।
ପତିପତ୍ନୀ ଏକବ୍ରତ, ଏକମନ-ପ୍ରାଣ,
ଭଗବାନେ ସେବା ନିତି, ସାଧନ, ଭଜନ ।
କାମନା ନାହିଁ ପରାଣେ, ଭୋଗେ ନାହିଁ ଆଶା,
ଦୁର୍ଲଭ ଭକତି ହୃଦେ, ବିଭୁ ହିଁ ଭରସା ।

କାଞ୍ଚି ପ୍ରଭୁ ସର୍ବେଶ୍ୱର ଭକତବତ୍ସଳ,
ମନ୍ଦିରେ ଛପନ ଭୋଗ, ଉଠେ ସଦା ଗୋଳ ।
ଗନ୍ଧଧୂପ ହୁଏ ମାତ୍ର, ଧର୍ମ ମର୍ମ ଜନ,
ନାନା ଭୋଗେ, ଆଡ଼ମ୍ବରେ କରନ୍ତି ପୂଜନ ।
ବ୍ରହ୍ମା, ଇନ୍ଦ୍ର, ବରୁଣ ତ କରନ୍ତି ପ୍ରତୀକ୍ଷା,
କୋଟି ଭୁବନ କରଇ ପାଦେ କୃପାଭିକ୍ଷା ।
ଭଗବତୀ ମହାଲକ୍ଷ୍ମୀ ପାଦତଳେ ବସି,
ସେବା କରି, ପଦ୍ମମୁଖ ଚାହୁଁଥାନ୍ତି ହସି ।
ଲକ୍ଷ ଭୋଗେ ପ୍ରଭୁର ତ ନ ପୂରେ ଉଦର,
କାଙ୍ଗାଳର ଖୁଦ ଦେଖି ଝୁଣ୍ଟି ଗଡ଼େ ନାଳ ।
କେଉଁ ପ୍ରେମିକାର ଜାଉ ଖାଇବେ ଯାଏ ମନ,
ଶବରୁଣୀ ପ୍ରେମେ କୋଳି ଅମୃତ ଭୋଜନ ।
ଆଜି ବଡ଼ ଭୋକ ଯିବେ ଦାମୋଦର ଘର,
ହେବନବେ ପ୍ରବଳ ଇଚ୍ଛା, ଅତିଥି ସତ୍କାର ।
ଅତି ବୃଦ୍ଧ, ହାଡ଼ମାଳ, ସନ୍ନ୍ୟାସୀର ବେଶ
ଧରି ଦ୍ୱିଜ କୁଟୀଦ୍ୱାରେ ହେଲେ ପରବେଶ ।
ଦୁର୍ଯୋଗକୁ ମୁଠେ ହେଲେ ଭିକ ମିଳି ନାହିଁ,
ଖାଲି ହାତେ ଫେରେ ଦ୍ୱିଜ ପ୍ରଭୁରେ ଜଣାଇ ।
"ପ୍ରଭୁ ! ଆଜି ଦୁଆରକୁ କେହି ଅଭ୍ୟାଗତ
ନ ଆସନ୍ତୁ, ନ ଫେରନ୍ତୁ ହୋଇଣ କ୍ଷୁଧିତ ।"
କୁଟୀର ଭିତରେ ଯାଇ ବ୍ରାହ୍ମଣୀକୁ କହେ,
ବ୍ରାହ୍ମଣୀ ଭାଳଇ, "ଏତ ନୂଆ କଥା ନୁହେ ।"
ତାଟି-ଦ୍ୱାରେ ଶୁଭେ ଡାକ, ଦାମୋଦର ଆସେ,
'ସନ୍ନ୍ୟାସୀ ତ ହେବେଟିଏ', ଭାବଇ ହରଷେ ।

ଅତି ଜୀର୍ଣ୍ଣ ଦେହ, ଠିଆ    ହେବା ଶକ୍ତି ନାହିଁ,
ଅତି କ୍ଷୁଧା, ମୁଖୁଁ କଥା    ନାହିଁ ବାହାରଇ ।
ଦାମୋଦର ଭକ୍ତିଭରେ    କରଇ ପ୍ରଣତି,
ଆଖିରୁ ଲୋତକ ବହେ    ପ୍ରାଣେ କୃପା ଅତି ।
ସନ୍ନ୍ୟାସୀ—ଭକତ, ତୋହର ଯଶ    ଶୁଣିଛି ବହୁତ,
ଆଜ ଆସିଛି ଖାଇବ    ମାଗି କରି ଭାତ ।
ଶ୍ରଦ୍ଧାନ୍ନ ଭକତ-ଅନ୍ନ    ଅମୃତରୁ ବଳେ,
ତୃପ୍ତ ହୁଏ ମୁଠେ ଭାତ    ପାଇଁ ପାଣି ଗ୍ରେଲେ ।
ଦୁଃଖୀ ଅଭ୍ୟାଗତ ଜନେ    ଯାର ଦୟା ନାହିଁ,
ଏ ବୃଦ୍ଧରେ ତା ଦୁଆର    ଦେଖି ନ ଯୋଗାଇ ।
ପୁରୁଣା ଶରୀର ଚଲି    ବୁଲି ଚଲୁ ନାହିଁ,
ତୋ ଅନ୍ନରେ ଲୋଭ ହେଲା,    ଆସିଛି ମୁଁ ଧାଇଁ ।
ମୁଠିଏ ମାତର ଅନ୍ନ,    ଲୋଡ଼ା ନାହିଁ ବେଶି;
ଦେବୁ କି ନ ଦେବୁ କହ,    ମୁଁ ବୃଦ୍ଧ ସନ୍ନ୍ୟାସୀ ।
ମୁଖୁ ନ ଫୁଟିଲା ବାଣୀ,    ବୃଦ୍ଧ ହାତ ଧରି
କୁଟୀର ଭିତରେ ନେଲା,    ଈଶ୍ୱର ସୁମରି ।
ଶୀତଳ ଜଳରେ ପ୍ରେମେ    ଚରଣ ଧୋଇଲା,
କୁଶାସନ ପାରି ହାତ    ଧରି ବସାଇଲା ।
ପତ୍ନୀର ସମୀପେ ଯାଇଁ    କହେ ସବୁ ହାଲ,
ବ୍ରାହ୍ମଣୀ ବତ୍ସଳ ପ୍ରାଣ    ବଡ଼ କଲବଲ ।
ବାସନ କୁସନ ନାହିଁ    ବସ୍ତ୍ର ଅଳଙ୍କାର,
ବିକିଦେଇ ଅତିଥିର    ରଚନ୍ତା ସତ୍କାର ।
କି ହେବ, କିସ କରିବ,    ମନେ ଘୋର ଚିନ୍ତା,
"ଭୋକପେଟେ ବାହୁଡ଼ିବେ,    ଅତିଥି-ଦେବତା ।"

ପଣ୍ଡିତାଣୀ-ନୟନରୁ ଗଡ଼ିଲା ଲୋତକ
ବ୍ରାହ୍ମଣୀ ମନେ ଉପାୟ ଦେଖାଗଲା ଏକ ।
ବ୍ରାହ୍ମଣୀ—ଧାଇଁ ତ ଭଣ୍ଡାରଘରେ ଆଣ ତ କତୁରୀ,
ଲମ୍ବ ବାଳ ଅଛି ଶିରେ ବାନ୍ଧିବା ଚଉରୀ ।
ବିକିଲେ ମିଳିବ ଧନ ଅତିଥି ତୋଷିବା,
ବୁଢ଼ୀ ହେଲେ ଲମ୍ବ ବାଳେ କିବା ଅଛି ଶୋଭା !
ବ୍ରାହ୍ମଣ ଭଣ୍ଡାର ଘରୁ କତୁରୀ ଆଣିଲା,
ଶିର ପାଖୁଁ କାଟି ଗୁଡ଼ କେଶ କତୁରିଲା ।
ଦୁହେଁ ବସି କ୍ଷିପ୍ର ହସ୍ତେ ବାନ୍ଧିଲେ ଚଉରୀ
ଚଉରୀ ବିକିବ ବିପ୍ର ଯାଏ ହାଟେ ଧରି ।
ଯୋଗକୁ କ୍ଷଣକେ କାହୁଁ ଯୁଟିଲେ ଗ୍ରାହକ,
ଘିଅ ଚାଉଳ ପରିବା ହେଲା ଲକାଠକ ।
ସତୀ ସ୍ନେହଭରି ରାନ୍ଧେ ଡାଲି ତରକାରୀ,
ଅନ୍ନର ସୁବାସେ ମହକିଲା ଘର ପୁରି ।
କଦଳୀପତ୍ରର ପାତ ବାଢ଼ିଦେଲେ ଅନ୍ନ,
ବୃଦ୍ଧ ସନ୍ନ୍ୟାସୀ ବସିଲେ କରିଣ ଭୋଜନ ।
ଯଜ୍ଞଭୋକ୍ତା ସର୍ବେଶ୍ୱର ଏ କି ତୁମ ଲୀଳା,
ବ୍ରାହ୍ମଣୀ ହାତର ରନ୍ଧା ଅମୃତୁଁ ବଳିଲା ।
ପ୍ରେମେ ପଙ୍ଖା ଧରି ଦ୍ୱିଜ କରଇ ବ୍ୟଞ୍ଜନ,
ବଳାଇ ବଳାଇ ଦ୍ୱିଜା ପରଷେ ବ୍ୟଜନ ।
ଅତିଥି-ଦେବତା ଖାଇ ହାଣ୍ଡି କଲେ ଖାଲି,
ନ ରହିଲା ଅନ୍ନ, ଡାଲି, ତରକାରୀ ବୋଲି ।
ସନ୍ନ୍ୟାସୀ—ଖାଇ ପିଇ ଆଜି ବାବୁ, ହେଲି ବଡ଼ ତୁଷ୍ଟ,
ଏ ରାତିଟା ରହିଯାଏ, ହୁଏ ଅଙ୍ଗେ କଷ୍ଟ ।

ସକାଳେ ଚଳିବ, ହେବ    ନାହିଁ କଳବଳ,
ରାତିକ ଅଳପ ଲେଡ଼ା,    ଆଞ୍ଜୁଳେ ଚାଉଳ ।
ରାତିଭୋଜନର ପାଇଁ    ଭାବନା ବିଶେଷ,
କରିବାକୁ ହେଲା ନାହିଁ,    ଥିଲା ଶେଷ କେଶ ।
ଆଦରେ ଦମ୍ପତି କାଟି    ବଳିଲେ ଚଉରୀ,
ସ୍ୱଳ୍ପ ଯୋଗାଡ଼ିଲେ ଅନ୍ନ,    ଡାଲି, ତରକାରୀ ।
ରାତି ରନ୍ଧନରୁ ନାହିଁ    ରହି ଅବଶେଷ,
ଅତିଥି-ଦେବତା ସବୁ    କଲେ ସୁଖେ ଗ୍ରାସ ।
ଦ୍ୱିଜ ପତିପତ୍ନୀ ଦୁହେଁ    ଅତିହିଁ ପ୍ରସନ୍ନ,
ଅତିଥି ଦେବତା ସୁଖେ    ଭୁଞ୍ଜିଲେ ତ ଅନ୍ନ ।
ପତ୍ନୀର ମୁଣ୍ଡିତ ଶିରେ    ପଡ଼ିଲେ ନଜର,
ଲାଜେ ମାଡ଼େ, ପତି ଆଖି    ହୁଏ ଛଳଛଳ ।
ଛିଣ୍ଡା ସେନ୍ତ୍ରରେ ଶୋଇ-    ପଡ଼ିଲେ ଅତିଥି,
ଅଖିଳ ବ୍ରହ୍ମାଣ୍ଡନାଥ,    କୋଟି ବିଶ୍ୱପତି !
ବ୍ରହ୍ମାଦିର ଗୁପ୍ତ ଚରଣ    କେଉଁ ଭାଗ୍ୟବଳେ,
ଦାମୋଦର ସୁଖେ ବସି    ଚିପେ ଆଦରରେ ।
ଭକତ କୋମଳ ସେବା    ପାବନ ପରଶ,
ପାଇ ପ୍ରଭୁ ହେଲେ କ୍ଷଣେ    ଘୋର ନିଦ୍ରା-ବଶ ।
ଅତିଥି ନିଦ୍ରିତ ଦେଖି    ଭାଷଇ ବ୍ରାହ୍ମଣୀ,
"ସାର୍ଥକ ଜୀବନ ନାଥ !    ସାର୍ଥକ ଏ ଭୂମି !
ଅତି ବୃଦ୍ଧ, ନାହିଁ ଶକ୍ତି,    ନ ପାରନ୍ତି ଚାଲି,
ଆମ ଭାଗ୍ୟ, ନେଲେ ସେବା,    ରହି ଦୁଇ ଓଳି ।
ସକାଳୁ ସେ ଯିବେ ଚାଲି,    ନ ଖାଇ କିପରି ?
ପାଢ଼ାନ୍ତରୁ ଯାଇ ଭିକ୍ଷା    ମାଗି, ଆସ ଫେରି ।

ଯାହାଙ୍କ ବିଧାତା ଦେବେ ସୁଖେ ରାନ୍ଧିଦେବା,
ଅମୂଲ୍ୟ ଏ ସେବା ନାଥ ! ଆଉ କି ପାଇବା ?
ଆମର ଶକତି ଅଛି ଅଛି ତ ଅଭ୍ୟାସ,
ନ ବାଧିବ ତିନି ରାତି ଓଳି ଉପବାସ ।
ପତିକୁ ପତ୍ନୀ ବଳାଇ ଶୁଦ୍ଧ ପ୍ରେମ ବଳେ,
ପ୍ରଣୟେ ବାନ୍ଧିଲେ ରଖି ବ୍ରହ୍ମାଣ୍ଡଠାକୁରେ ।
ଅନନ୍ତଶାୟୀ ଶ୍ରବଣେ ଭକତ-ଦମ୍ପତି-
ପ୍ରେମଭରା କଥା ବାଜେ, ତରଳଇ ଧୃତି ।
କମଳ ନୟନକଣୁଁ ଅଶ୍ରୁ ଯାଏ ବହି,
ଆଜ ବେଶି କଥା ପ୍ରାଣ ନ ପାରିଲା ସହି ।
ପ୍ରଭୁ-ଇଚ୍ଛାରେ ବ୍ରାହ୍ମଣ ବ୍ରାହ୍ମଣୀ ଶୋଇଲେ,
ପ୍ରେମମୟ ମହାପ୍ରେମେ ଲୀଳା ବିରଚିଲେ ।
ପ୍ରଭୁ ଉଠି ଭକ୍ତପତ୍ନୀ ଶିରେ ଦେଲେ ହାତ,
କହିଲେ, "ମା ! ଶିରେ ତୋର ହେଉ ସୁଶୋଭିତ
ପ୍ରଲମ୍ବ ସୁନ୍ଦର କେଶ, ଅଙ୍ଗେ ଦୁହିଁଙ୍କର
ଖେଳୁ ତରୁଣ ସୌନ୍ଦର୍ଯ୍ୟ ଲୋକେ ଆଗୋଚର ।
ମଣିରତ୍ନ ବିଭୂଷଣ ଯାଉ ଅଙ୍ଗେ ଭରି,
ଏ ଦୀନ କୁଟୀର ହେଉ ରମ୍ୟ ରାଜପୁରୀ ।
ଧନରତ୍ନେ ପୂର୍ଣ୍ଣ ହେଉ ନିୟତ ଭଣ୍ଡାର,
ଦ୍ରବ୍ୟ ଭୋଗ ପରେ ଯାଅ ବଇକୁଣ୍ଠପୁର ।"
ପ୍ରେମେ ଆଶୀର୍ବାଦ ଢାଳି ବ୍ରହ୍ମାଣ୍ଡଗୋସାଇଁ
କାହିଁ ଚାଲିଗଲେ, କେହି ଜାଣିଲା ତ ନାହିଁ ।
କ୍ଷଣକେ ବିଭୁ-ଆଶିଷ ହେଲା ମୂର୍ତ୍ତିମାନ,
ସକାଳେ ବ୍ରାହ୍ମଣୀ ଦେଖେ ଫିଟାଇ ନୟନ ।

କାମଦେବ ସମ ପତି, ରୂପ ବିମୋହନ-,
ନିଜ ଅଙ୍ଗେ ମଣି ରତ୍ନ ଅମୂଲ୍ୟ ଭୂଷଣ ।
ଏ କି ଶୋଭଇ ମସ୍ତକେ ପ୍ରଲମ୍ବ କୁନ୍ତଳ,
ମାଳମା ବନ୍ଧିବେ ଶିରୁ ଲୋଟେ ପାଦତଳ ।
କୁଟୀର ପାଲଟିଗଲା ରମ୍ୟ ରାଜପୁରୀ,
ଚତୁର୍ଦ୍ଦିଗ ଝଟକିଲା, ଧନରତ୍ନ ଭରି ।
ଉତ୍କଣ୍ଠପରାଣ, ଦ୍ୱିଜା ଉଠାଏ ପଡ଼ିକରେ,
ଭେକ-କପଟ, ନିଦ ଭାଙ୍ଗୁ ନାହିଁ ସହଜରେ ।
ବ୍ରାହ୍ମଣୀ—ଉଠନା ଉଠନା ବେଗେ ଖୋଜ ସନ୍ନ୍ୟାସୀଙ୍କୁ,
ବ୍ରାହ୍ମଣ—ବୃଦ୍ଧ ତ ମାନବ ନୁହେ, ଖୋଜିବି କାହାକୁ ?
କୋଟି ବ୍ରହ୍ମାଣ୍ଡର ନାଥ, ସେ ତ ଭଗବାନ,
ସର୍ବଜ୍ଞ ଅନନ୍ତ ବ୍ରହ୍ମ ନିତ୍ୟ ସନାତନ,
ଇଚ୍ଛା ନାହିଁ ଯଦି ତାର, ଖୋଜି କେ ପାଇବ ?
ଦେବ ଋଷି ସିଦ୍ଧ ଜନେ ସେ ପଦ ଦୁର୍ଲ୍ଲଭ ।
ଭକତବତ୍ସଳ ସେ ନ ସନ୍ନ୍ୟାସୀର ବେଶେ
ଆସିଥିଲେ କୃପାକରି ନିଜେ ପ୍ରେମ-ବଶେ ।
ଆସିଥିଲ ଦୀନ-ଦ୍ୱାରେ ଅନାଥର ନାଥ !
କି ସତ୍କାର କରନ୍ତା ଏ ଦୀନ ଅସମର୍ଥ ।
ଦୀନବନ୍ଧୁ, କୃପାମୟ ! କହିଁ ଗଲ ଚାଲି ?
ଆଜି ଯତନେ ସେବିଥାନ୍ତି, ଶ୍ରୀଚରଣ ଧରି,
ପ୍ରାଣଭରି ଦେଖିଥାନ୍ତି କମଳ ନୟନ,
ଶ୍ରୀମୁଖରୁ ଶୁଣିଥାନ୍ତି ଅମିୟ ବଚନ ।
ପଦସେବା କରିଥାନ୍ତି ରାତି ରାତି ଧରି,
ଧୋଇ ଦେଇଥାନ୍ତି ପଦ ପ୍ରେମ-ଅଶ୍ରୁ ଢାଳି ।

ଅମୃତ ଆସ୍ୱାଦ ଦେଇ ଗଲ କାହିଁ ଛାଡ଼ ?
ବିରହ ଅସହ୍ୟ ହୁଏ, ପ୍ରାଣ ଯିବ ଉଡ଼ ।
ଭକତ-ଦମ୍ପତି ସ୍ଥାନୁ ନ ପାରିଲେ ଚଳି,
ଦିନ ସାରା ଗଡ଼େ ଅଶ୍ରୁ ବିରହରେ ଜଳି ।
ଘରେ ମହୋତ୍ସବ କରି ପତି ପତ୍ନୀ ଦୁଇ
ବନ୍ଧୁଦତ୍ତ ସେ ସମ୍ପତ୍ତି ଶୁଦ୍ଧଚିତ୍ତ ହୋଇ
ଅରପିଲେ ସେବା ଅର୍ଥେ, ଥିଲେ ଯେତେ ଦିନ,
ସେ ବିଭବେ ପୂଜୁଥିଲେ ନର-ନାରାୟଣ ।

---

# ଅପ୍ରାକୃତ ପୁରୀ

ରାମାନନ୍ଦ ଉପଦେଶ ମୁନିଙ୍କୁ ଦେଲେ,
ଚିନ୍ମୟ ତତ୍ତ୍ୱ ବୁଝିବୁ ବୈକୁଣ୍ଠ ଗଲେ ।
ଗଙ୍ଗା ତୀରେ ତୀରେ ମୁନି ଚଳିଲେ ପ୍ରୟାଗ,
ତହୁଁ ବୈକୁଣ୍ଠ ଗଲେ ଧରି ଶୁଭ ଯୋଗ ।
କଳିକଳୁଷନାଶିନୀ ଭାଗୀରଥୀ-ମାତା
କରନ୍ତି ପୁଣ୍ୟଭୂମି ଐଶ୍ୱର୍ଯ୍ୟମଣ୍ଡିତା ।
ବିଚିତ୍ର ବିଭବ ଧରି ତୋଳନ୍ତି ଶରୀର,
ମିଶିଛି ଆକାଶେ ଚିତ୍ର- କୂଟ ଗିରିବର ।
ଉଚ୍ଚୁ ଉଚ୍ଚେ ଉଠି ଏକ ଶିଖରର ଚୂଳେ,
ମୁନି ନିରେଖନ୍ତି କାହିଁ ଗୁମ୍ଫା କୁଞ୍ଜକୂଳେ ।
ସାଧନାର ପୁଣ୍ୟପୀଠ ଯୋଗୀଋଷିଘର,
ଅନ୍ତରୁ ଶୁଭଇ ଗୀତ ଗମ୍ଭୀର ମଧୁର ।

ଅମୃତ ନିସ୍ୱନ ସହୁଁ　　ବାଜିଲା ଶ୍ରବଣେ,
ତରଙ୍ଗ ଖେଳିଲା ମୁନି　　ଭାବମୟ ପ୍ରାଣେ ।
ଖୋଜି ଖୋଜି ଦେଖିଲେ ସେ　　ପ୍ରସ୍ତର କବାଟ,
ଖୋଲନ୍ତେ କପଟ, ମନ　　ହୋଇଲା ଉଚ୍ଚାଟ ।
ବହୁ ଚେଷ୍ଟା ପରେ ରୁଦ୍ଧ　　ଦ୍ୱାର ଯାଏ ଫିଟି,
ମଧ୍ୟରେ ପ୍ରବେଶି ମୁନି　　ମହାତ୍ମାରେ ଭେଟି ।
ଦେଖିଣ ମହାତ୍ମା ମୁନି　　ପ୍ରଣତି ବନ୍ଦିଲେ,
ଆଶିଷ ଦେଇ ମହାତ୍ମା　　ବାଟ ଦେଖାଇଲେ ।
'ସେଇ ଶିଡ଼ି ବାଟେ ଯାଅ'　　ଦେଲେ ସେ ଆଦେଶ,
ଶିଡ଼ି ଧରି ଗୁମ୍ଫା ତଳେ　　ମୁନି ପରବେଶ ।
ପଡ଼ିଛି ପ୍ରାଙ୍ଗଣ ସ୍ୱଚ୍ଛ　　ଦରପଣ ସରି,
ଅତୁଲ୍ୟ ପ୍ରକାଶ ଯାଏ　　ଚତୁର୍ଦ୍ଦିଗେ ଖେଳି ।
ଅଦ୍ଭୁତ ସେ ପ୍ରାଙ୍ଗଣେ　　ସଜ୍ଜିତ ଆସନ;
ଚାରି ଆସନରେ ଯୋଗୀ　　ସମାଧିମଗନ ।
ପଞ୍ଚମ ଆସନ ଖାଲି　　ରହିଅଛି ତହିଁ
ମୁନି ଭାବନ୍ତ ସାଧକ　　ଯାଇଥିବେ କାହିଁ ।
ଆସନର ପାଶେ କମ-　　ଣ୍ଡଳୁ ଭରା ଜଳ,
ପରିଷ୍କୃତ ପତ୍ରେ ସଜା　　ଫଳ, କନ୍ଦ, ମୂଳ ।
ନିକଟରେ ସ୍ୱଚ୍ଛନୀରା　　ରମ୍ୟ ପୁଷ୍କରିଣୀ,
ଘେରିଛି ପୁଷ୍ପବାଟିକା,　　ଶୁଭେ ଗୁଞ୍ଜି ଧ୍ୱନି ।
ପ୍ରସନ୍ନ ପରାଣେ ମୁନି　　ସ୍ନାନ ଶୌଚ ସାରି,
ଫୁଲ ଆଣି ବସିଲେ ସେ　　ଶୂନ୍ୟାସନ ଧରି ।
ବିଜୟୀରାଘବେ ଭୋଗ　　କରି ସମର୍ପଣ,
କରିଲେ ସନ୍ତୋଷେ ପ୍ରଭୁ-　　ପ୍ରସାଦ-ଗ୍ରହଣ ।

ବସିଛନ୍ତି ଯୋଗୀ, ନାହିଁ     ବାକ୍ୟବିନିମୟ,
ଫୁଲ ଫଳ ଆସି ଯୁଟେ     ହୋଇଲେ ସମୟ ।
ମୁନି ତହିଁ ରହି ହେଲେ     ଭଜନନିରତ,
ଆନନ୍ଦେ ବହୁତ ଦିନ     ହୋଇଲା ଅତୀତ ।
ଦିନେ ମୁନି ତୋଳିବାକୁ     କୁସୁମ ତୁଳସୀ,
ବାଟିକା-ରକ୍ଷିକା ପାଶେ     ପହଞ୍ଚିଲେ ଆସି ।
ଦେଖୁ ଦେଖୁ ମୁନି ହେଲେ     ପ୍ରସ୍ତର ବିଗ୍ରହ,
ଚଳିବାର ଶକ୍ତି ଗଲା,     ସ୍ଥିର ହେଲା ଦେହ ।
ସେ ସ୍ଥିତିରେ କଟିଗଲା     ବହୁତ ଦିବସ,
ଦେଖୁଛନ୍ତି, ଶୁଣୁଛନ୍ତି,     ଅଥଚ ବିବଶ ।
ମୁନି ରହିଁଛନ୍ତି, ନିତ୍ୟ     ଅପୂର୍ବ ଯୋଗିନୀ
ଉହ୍ଲାଇଲେ ଷୋଳ ଜଣ     ଗଣୁଥାନ୍ତି ମୁନି ।
ବାଟିକା-ରକ୍ଷିକା ପାଖେ     ଗଢ଼ିଲେ ମଣ୍ଡଳୀ,
ପ୍ରତିହସ୍ତେ ଥିଲା ପୁଷ୍ପ-     ପୂର୍ଣ୍ଣ ଦିବ୍ୟଥାଳୀ ।
ଭବ୍ୟମୂର୍ତ୍ତି ମୁନି ପରେ     ଚଢ଼ାଇ କୁସୁମ,
ସରବେ ଭକତିଭରେ     ରଚିଲେ ପ୍ରଣାମ ।
ପରେ ସୁମଧୁର ସ୍ୱରେ     ଵିରଚିଲେ ସ୍ତୁତି,
ଜାଗେ ପ୍ରାଣ ଯାଇଁଉଠେ     ପ୍ରସ୍ତରମୂରତି ।
ସହଜ ସମାଧି ଗଲା,     ମୁନି ଗଲେ ପଡ଼ି,
ଜାଗ୍ରତ ହୋଇଲେ, ଯୋଗି-     ନୀଏ ଗଲେ ଛାଡ଼ି ।
ସାଧାରଣ ସ୍ଥିତି ଲାଭ     କଲେ ମୁନିବର,
ଵିଜୟ-ଗ୍ରଧବ-ପୂଜା     କରନ୍ତି ବିସ୍ତର ।
କୁସୁମ ତୁଳସୀ ତୋଳି     ବାହାରନ୍ତି ମୁନି
ଦେଖନ୍ତି ରକ୍ଷିକା ସ୍ଥାନେ     ବୃଦ୍ଧା ତପସ୍ୱିନୀ ।

ଚରଣ ପରଶି ମୁନି  ରଚନ୍ତି ପ୍ରଣାମ,
ଶିରେ ହସ୍ତ ଥୋଇ ବୃଦ୍ଧ  ଭାଷନ୍ତି ବଚନ,
"ଯାଅ ବତ୍ସ ! ରତ ପ୍ରେମେ  ଭଜନ ପୂଜନ !
ବଚନୁଁ ବାତ୍ସଲ୍ୟ ଅବା  ହୁଏ ବରଷଣ ।
ତୁଷ୍ଟ ମନେ ତହୁଁ ମୁନି  ହୋଇ ଅଗ୍ରସର,
ତୋଳିଲେ ହରଷେ ପୁଷ୍ପ  ତୁଳସୀ ନିକର ।
ଆସନେ ଆସିଣ ଯୋଗୀ  ପୂଜା ବିରଚିଲେ,
ଶେଷେ ଭୋଗ ଦେଇ ପ୍ରେମେ  ପ୍ରସାଦ ପାଇଲେ ।
ତହିଁ ପୂର୍ବ ସ୍ମୃତି କଥା  ବିଚାରନ୍ତି ମନେ,
"ଅଦ୍ଭୁତ ! କେତେ ଯେ  ବର୍ଷ ଗଲା ମୃଷ୍ଟବନେ ।
ପାଷାଣ ବିଗ୍ରହ ଧରି  ଆସିଲେ ଅମରୀ,
ବରଷିଲେ କୃପା, ପ୍ରାଣୀ  ପାଇଲି ମୁଁ ଫେରି !
ଆହୁରି ବିଚିତ୍ର ! ଦେଇ-  ଥିଲି ଯେ ଚନ୍ଦନ,
ଶୁଖି ନାହିଁ ଦେବ ଦେହେ  ଗଲେ ଏତେ ଦିନ !
ମନେ ହୁଏ, କ୍ଷଣ ଦୂରେ  ବାଟିକାକୁ ଯାଇ,
ଫୁଲ ଆଣି, ବସି ପୁଣି  ଦେବତା ପୂଜଇ ।
ଦୁଇ କ୍ଷଣେ ଏତେ ବର-  ଷର ଅନୁଭବ,
କେ କହିବ, କିପରି ଏ  ଅଦ୍ଭୁତ ସମ୍ଭବ ?
ମହାତ୍ମାଙ୍କ ପାଶେ ଦ୍ୱାରେ  ଯିବି ମୁଁ ହିଁ ଚଳି,
ପଚାରିବି ସେ ତ ରହି-  ଛନ୍ତି କୃପାକରି ।
ଯାଇ ମହାତ୍ମାଙ୍କ ପାଶେ  ବିରଚି ପ୍ରଣତି,
ବସିଗଲେ ହୋଇ ସ୍ଥିର  ନ ଫୁଟେ ଉକତି ।
ମହାତ୍ମା—କହ ବାବା ! ତୋର  ଯେତେକ ଯେତେ ଅନୁଭବ,
ମୁନି—ଭଗବନ୍ ! ବିଚିତ୍ର ସବୁ,  ଯେବୁ ଅଭିନବ ।

ତାପରେ କହିଲେ ମୁନି ମହାତ୍ମା ଅଦ୍ଭୁତେ,
ଆମୂଳଚୂଳ ଘଟନା, ଘଟିଥିଲା ଯେତେ ।
ମହାତ୍ମା—ଏହି କ୍ଷେତ୍ର ପ୍ରକୃତର ପ୍ରଭାବୁଁ ଅତୀତ,
ଏଠାର ସମସ୍ତ ବସ୍ତୁ ନବ୍ୟ, ଅପ୍ରାକୃତ ।
ଅପ୍ରାକୃତ ପୁଣି, ଏ ଯେ ଚିନ୍ମୟ ଜଗତ,
ଦେଶକାଳ-ମାତ-ତନ୍ତ୍ର ସମ୍ପୂର୍ଣ୍ଣ ଅତୀତ ।
କ୍ଷଣ ବଢ଼ି ହୁଏ ବର୍ଷ, ବର୍ଷ ହୁଏ ଯୁଗ,
ସୃଷ୍ଟି ଅନ୍ତର୍ଗତ ସ୍ୱପ୍ନ, ସୁପ୍ତି ହୁଏ ଭୋଗ ।
ଦୃଷ୍ଟି-ତଳ-ଜ୍ୟୋତି ଯଦି କଟଣ୍ଡୁ ବା ଅନ୍ତରେ,
ହୁଏ ଉପସ୍ଥିତ, ତେବେ ବିସ୍ମୟ କାହିଁରେ ?
ତା ନ ହେଲେ ଅନ୍ତର୍ଦୃଷ୍ଟି ସମ୍ଭବ କେସନ ?
ଅନ୍ତର୍ବିଶ୍ୱ, ବଭାତବ କେହ୍ନେ ଘନ ଘନ ?
ଏଇ ଦେବଧାମ କଥା ଜଗତ୍କୁ ଅଜ୍ଞାତ,
ସବୁ ଅସମ୍ଭବ ଆମି ଗୁପତେ ସଞ୍ଚିତ ।
ଚିନ୍ମୟ, ବିଜ୍ଞାନମୟ ଧରାତଳ ପରେ,
ଭଗବଚ୍ଚରଣ ଚିହ୍ନ ଅଙ୍କିତ ରୁଚିରେ ।
ଏହି ସ୍ଥାନ ଅତି ସ୍ୱଚ୍ଛ, ବଲଙ୍କ ଦର୍ପଣ,
ନିଜ ମୁଖାକୃତି ସ୍ପଷ୍ଟ ହୁଏ ଦୃଶ୍ୟମାନ ।
ଦିବ୍ୟଦୃଷ୍ଟି, ଆତ୍ମଜ୍ଞାନ, ବିଭୂପ୍ରାପ୍ତି ମୁକ୍ତି,
ସହଜେ ସମ୍ଭବେ ବାବା ଯଥାଯୋଗ ସାଧନ ।
ତପସ୍ୱିନୀ କଥା ପାଳି ଭଜନ ପୂଜନ
କର ବତ୍ସ ! ମନୋବାଞ୍ଛା ହୋଇବ ପୂରଣ ।
ମୁନି ସେପରଣ ଆସନ ପାଖକୁ ଆସିଲେ,
ତୁଳସୀ ଆଣିବେ ବୋଲି ବାଟିକାକୁ ଗଲେ ।

ଫୁଲବାଡ଼ିରେ ତୁଳସୀ ବୁଦାଏ ନ ଦିଶେ,
ଆଶ୍ଚର୍ଯ୍ୟେ ଖୋଜନ୍ତି ମୁନି ଚାହିଁ ଚଉଦିଶେ ।
ଖୋଜି ବହୁ ଦୂରେ ଦିଶେ ତୁଳସୀକିଆରି,
ସେ ତ ମୁନି ମନ ନିଏ ଆକର୍ଷଣ କରି ।
କିନ୍ତୁ ପଥ କଙ୍କରିଳ, ସଂକୀର୍ଣ୍ଣ, ବିକଟ,
ସହଜ ତ ନୁହେ ଚାଲି ଯିବା ଏତେ ବାଟ ।
ସାହସ ବାନ୍ଧିଣ ମୁନି ହେଲେ ଅଗ୍ରସର,
ମୁଖୁଁ ଫୁଟେ ରାମ ନାମ ପବିତ୍ର ମଧୁର ।
ନାମ ଗାନେ ଭୂମାତାଙ୍କ ତରଳିଲା ମନ,
କଙ୍କରିଳ ପଥେ ଭରି ଦିଶଇ ସୁମନ ।
ତୁଳସୀ ବନିକା ପାଶେ ମୁନି ସୁଖେ ମିଳି,
ପବିତ୍ର ମନେ ତୁଳସୀ ଯାଉଛନ୍ତି ତୋଳି ।
ସୁନ୍ଦରୀ ବାଳିକା କାହୁଁ ହୋଇ ଉପସ୍ଥିତ,
ମନାକଲା, ରୋକହୋଇ ଗଲା ମୁନିହାତ ।
ମୁନି—କିଆଁ ମନାକରୁ ଝିଅ, ପୂଜିବି ଦେବତା,
ଏକମାତ୍ର ଦଳ ଦିଅ, ରଖ ମୋର କଥା ।
ଆଚ୍ଛା ! ନ ଦେବୁ ତ କହ, ଏଥି ସ୍ୱାମୀ କିଏ ?
ମାଗିନେବି, ବାରେ ତାଙ୍କ ନିକଟକୁ ଯାଏ ।
ହସି ହସି କହେ କନ୍ୟା, "ମୁନି ! କର କ୍ଷମା,
ଜାଣି ନାହଁ ଅନୁସୂୟା ଜନନୀ ମହିମା ।
ପଶୁପକ୍ଷୀ ବନିକାରେ ନ ପଶନ୍ତି ଡରି,
ତାଙ୍କର ଆଜ୍ଞା ଅବଜ୍ଞା କିଏ ପାରେ କରି ?
ମୁନି—ମହାମାତା ଅନୁସୂୟା ପାଶେ ଝିଅ ଚାଲି,
ମାଗିଣ ଘେନିବି ଏକ ତୁଳସୀର ଦଳ ।

ଭୂଗର୍ଭ-ପଥେ ବାଳକା    ମୁନିଙ୍କୁ ଘେନିଲେ,
ଗଙ୍ଗାତଟେ ଦିବ୍ୟମଠ    ପାଖେ ପହଞ୍ଚିଲେ ।
ମଠ ଦେଖାଇ ବାଳକା,    ମୁନିଙ୍କୁ ଭାଷଇ,
"ମାତା ଅନୁସୂୟାଙ୍କର    ବାବା ! ମଠ ଏହି ।
ମାଆଙ୍କୁ ତୁଳସୀ ଦଳ    କରନ୍ତୁ ପ୍ରାର୍ଥନା,
ତାଙ୍କ ଆଜ୍ଞା ହେଲେ କିଏ    କରିପାରେ ମନା !"
ଏହା କହି କନ୍ୟା କାହିଁ    ହେଲେ ଅନ୍ତର୍ହିତ,
ମାତାଙ୍କୁ ଦେଖିବେ ମୁନି    ହୁଅନ୍ତି ଭାବିତ ।
ଉଚ୍ଚ ପରବତୁ ଦୁଇ    ବାଘ ଆସି ଧାଇଁ,
ମୁନିଙ୍କୁ ଚାହାନ୍ତି ରକ୍ତ-    ନୟନ ଘୂରାଇ ।
ମହାତେଜେ ଆସି ଲୁଚି-    ଗଲେ ପାଖ ବନେ,
ଆକ୍ରମଣ କରିବେ କି ?    ହୁଏ ମୁନି ମନେ ।
କିଛି ପରେ ମଠ ଛାତେ    ଦୁଇଟି ମୟୂର,
ଦେଖାଦେଇ କ୍ଷଣ ପରେ    ହୋଇଲେ ଅନ୍ତର ।
ପରକ୍ଷଣେ ଅତି ଉଚ୍ଚେ    ରମ୍ୟ ଦୁଇ ପାରା,
ଉଡ଼ିଲେ ବିଚିତ୍ର ରଙ୍ଗେ    ଶୂନ୍ୟେ ଦେଇ ଘେରା ।
ଉଚ୍ଚୁଁ କ୍ରମେ ଉଡ଼ି ଉଡ଼ି    ନିମ୍ନେ ଆସି ଖସି,
ମୁନିଙ୍କର ଦୁଇ କାନ୍ଧେ    ଦୁହେଁ ଗଲେ ବସି ।
ମୁନିଙ୍କୁ ନ ଲାଗେ ସୁଖ,    ତଳେ ଦେଲେ ଥୋଇ,
ତଳେ ଆସି ପାରା ଦୁଇ    କରୁଣେ ବୋବାଇ ।
ହାତରେ ଧରନ୍ତି ମୁନି,    ଶିରେ ସେ ଚଢ଼ିଣ,
ଘୁହୁଁ ଘୁହୁଁ ଅନ୍ତରୀକ୍ଷେ    ହେଲେ ଅନ୍ତର୍ଦ୍ଧାନ ।
ମୁନି ଭାବୁଛନ୍ତି ମନେ,    "କିପାଁ ହଳେ ହଳେ
ବ୍ୟାଘ୍ର, ମୟୂର, କପୋତ    ଆସି ଦେଖା ଦେଲେ ।

ସନ୍ଧ୍ୟା ହେଲା, ବଡ଼ କ୍ଳାନ୍ତ ବୋଧ କଲେ ମୁନି,
ସରଗୁଁ ଢାଳିଲେ ଚନ୍ଦ୍ର ବିମଳ ଜୁହ୍ନମୀ।
ମନ୍ଦ ମନ୍ଦ ଗନ୍ଧବହ କୋମଳ ପରଶ
ପାଇ ମୁଦିହୁଏ ଆଖି, ମୁନି ନିଦ୍ରାବଶ।
ସ୍ୱପନେ ଦେଖନ୍ତି ମୁନି, ଅତ୍ରି ଅନୁସୂୟା,
ତପତ କାଞ୍ଚନ ଭଳି ଝଟକୁଛି କାୟା।
କହୁଛନ୍ତି ମାତା, "ବତ୍ସ! ମୋ ଦର୍ଶନ ପାଇଁ,
ବହୁତ ବିକଳ ହୋଇ ଜୁହିଁଥିଲୁ ତୁହି।
ବ୍ୟାଘ୍ର, ମୟୂର, କପୋତ ଯୁଗଳ ରୂପରେ,
ଦରଶନ ଆଗୁଁ ଆମେ ଦେଇଥିଲୁଁ ତୋରେ।
ନିୟମ ତ ନାହିଁ, ମନା ଅଛି କଳିକାଳେ,
ପ୍ରତ୍ୟକ୍ଷ ଦର୍ଶନ ଆଗୁଁ ସହଜେ ନ ମିଳେ।
ତୁଳସୀ ବନିକା ବାବୁ! ମୋର ପ୍ରିୟସ୍ଥାନ,
ବସିଥିଲେ ଦୁଇ ଭାଇ ଶ୍ରୀରାମ ଲକ୍ଷ୍ମଣ
ମହର୍ଷି ଅତ୍ରିଙ୍କ ପାଖେ ମନସୁଖେ ତହିଁ,
ବଇଦେହୀ ସତୀ କୃପା କରିଥିଲେ ଯାଇ;
ମଲ୍ଲିକା-ନିକୁଞ୍ଜେ ମୋରେ ଦେଇ ଦରଶନ,
କୃତାର୍ଥ କରିଣ ଥିଲେ, ସେହି ଦିନୁ ମନ।
ପୂତ ମନେ ସେହି ସ୍ଥାନେ, ବଡ଼ ବଡ଼ ଦଶେ,
ପୀରତି-ଲୋତକ ଝରେ, ଯେବେ ଯାଇଁ ବସେ।
ମଲ୍ଲିକା ନିକୁଞ୍ଜେ ବାବୁ! ରଚ ସୁଖ ବାସ,
ଅଳପ ଦିନେ ପୂରିବ ପରାଣ-ପିଆସ।
ସରିଲା ମାତାଙ୍କ କଥା ଆଖି ଗଲା ଖୋଲି,
ପ୍ରାତଃକାଳେ ମୁନି ଆସି ମହାତ୍ମାରେ ମିଳି।

ବଖାଣନ୍ତି ସ୍ୱପ୍ନକଥା, ପାଇଣ ଆଦେଶ,
ମଲ୍ଲିକା-ନିକୁଞ୍ଜେ ମୁନି ରଚିଲେ ନିବାସ ।
ପରଦିନ ନିତ୍ୟକର୍ମ କରି ମୁନି ଶେଷ,
ବିଷ୍ଣୁଚରଣ କମଳେ ମାନସ ନିବେଶି—
କରିବାକୁ ଯାଉଛନ୍ତି, ବହି କାନ୍ଧେ ଭାର,
ସୁନ୍ଦର ଭୀଲକୁମାର ହୋଇଲା ହାଜର ।
ଏକ କାନ୍ଧେ ଧନୁ, ଆନ କାନ୍ଧେ ଫଳମୂଳ,
ମୃଦୁହାସବିଜଡ଼ିତ ବଦନ-କମଳ ।
କହଇ ମଧୁର ଭାଷେ, "ଆଣିଅଛି ମୁହିଁ,
ବିଜୟନ୍ତୁ ସାଧବେ ଭୋଗ ଲଗାନ୍ତୁ ଗୋସାଇଁ ।"
କନ୍ଦ, ଫଳ, ମୂଳ ଭୋଗ ଦେଇ ମୁନିବର,
ଆଦରେ ବାଳକେ ଦେଲେ ପ୍ରସାଦ ପ୍ରଭୁର ।
ଆନନ୍ଦେ ବାଳକ ପ୍ରେମେ ପ୍ରସାଦ ପାଇଲା,
ସାରିଣ ପ୍ରସାଦ ଶେଷ ମୁନି ଭାବେ-ଭୋଳା ।
ଏପରି ସୁମିଷ୍ଟ ଦ୍ରବ୍ୟ ଅଛି କି ଜଗତେ
ଅମୃତ ତ ପଛେ ପଡ଼ି- ଯିବ ହୁଏ ପ୍ରତେ ।
ଭୀଲବାଳକ—ଏ ତିନି ଦରବ ମଧ୍ୟୁଁ କିଏ ହେଲା ପ୍ରିୟ ?
ପ୍ରତିନିତ୍ୟ ଆଣି ଦେବି ସନ୍ତୋଷେ ବତାଅ ।
ମୁନି—ସବୁ ମଧୁର, ସ୍ୱାଦିଷ୍ଟ, ଅତି ତୃପ୍ତିକର,
ତିନିରୁ ସମାନ ଭାବେ ଲୋଡ଼ା ନିତି ମୋର ।
'ବହୁତ ଆଚ୍ଛା' କହିଣ ସଦୃଶ୍ୟ କୁମାର,
ପ୍ରଣାମ କରିଣ କ୍ଷଣେ ହୋଇଲା ଅନ୍ତର ।
ବିଶ୍ରାମ କରିବେ ମୁନି କରୁଛନ୍ତି ମନେ,
ନିଦ୍ରା ତ ଆସିଲା ମାଡ଼ି ବୁଡ଼ିଲେ ଶୟନେ ।

ଦେଖନ୍ତି, ସପନ ସୀତା, ରାମ, ଲଇଷଣେ,
ସ୍ଫଟିକ ଶିଳାରେ ବସି କରନ୍ତି ଭୋଜନ ।
ଲକ୍ଷ୍ମଣଙ୍କୁ ରାମଚନ୍ଦ୍ର କହନ୍ତି ମଧୁରେ,
କନ୍ଦ, ମୂଳ, ଫଳ ନେଇ ଦିଅ ତ ମୁନିରେ ।
ଲକ୍ଷ୍ମଣେ ଉଠିବା ଦେଖି ମୁନି ଯୋଡ଼ି ହାତ,
ବିନୟେ କହନ୍ତି ବାଣୀ ପ୍ରେମାଶ୍ରୁ ଗଳିତ ।
"ମୋର ପୂଜ୍ୟ ଦେବ ! ଆଗ କରନ୍ତୁ ଭୋଜନ,
ଚରଣର ଦାସ ପରେ କରିବ ଭକ୍ଷଣ ।
ପତ୍ରର-ଶେଷ-ପ୍ରସାଦ ପାଇଣ ଆଦରେ,
ଭାଗ୍ୟବାନ ମଣିବ ଏ ଦାସ କାଳେ କାଳେ ।
ରାମଚନ୍ଦ୍ର—ଏଭଳି ମୁନିଙ୍କୁ ହେଲେ ଦେବାକୁ ଉଚ୍ଛିଷ୍ଟ,
ଅସଙ୍ଗତ, ଶିବ କିଏ, ହେବ କାର ଇଷ୍ଟ ?
ମୁନି—ଭଗବାନ ! ମୁଁ ତ ନିତ ଉଚ୍ଛିଷ୍ଟଇ ଖାଏ,
ଏ ତ ମୋର ନିତ୍ୟ କ୍ରିୟା, ନୂଆ କିଛି ନୁହେ ।
ଯୋଗବେଳ ଧ୍ୟାନ ମୂର୍ତ୍ତି, ପ୍ରତ୍ୟକ୍ଷ ଦର୍ଶନେ,
ନାହିଁ କିଛି ଭେଦାଭେଦ, ଦୁଇ ସମ ମଣେ ।
ବୈଦେହୀ—ଏ ତ ଭକ୍ତମୁନି, ବାବା ! ଦିଅ ତ ପ୍ରସାଦ,
ଦାସ୍ୟ ଭାବେ ପୂଜେ ସଦା ପ୍ରଭୁ ପଦ୍ମପାଦ ।
ଲକ୍ଷ୍ମଣ—'କାୟେନ ମନସା ବାଚା' ଅନ୍ୟ ଗତି ଯାର,
ନାହିଁ ତାର ପ୍ରସାଦରେ ନିତ୍ୟ ଅଧିକାର ।
ରାମଚନ୍ଦ୍ର—ସମସ୍ତଙ୍କ ହୃଦେ ଯଦି ଏକା ଅନୁକମ୍ପା,
ସମ୍ମତ ଭରୁଛି, ନାହିଁ କରିବ ମୁଁ କମ୍ପା !
ଲକ୍ଷ୍ମଣ ତୋଳିଣ ତିନି ପତ୍ର କଲେ ଦାନ,
କୃତାର୍ଥ ହୋଇଲେ ମୁନି, ରଚିଲେ ଭୋଜନ ।

ସର୍ବାଙ୍ଗେ ପୁଲକ ଖେଳେ, ନେତ୍ରେ ଅଶ୍ରୁ ଝରେ,
ହସ୍ତ ମୁଖ ଧୋଇନେଲେ ଲୋତକ-ସଲିଳେ ।
ଭୂତଳେ ପଡ଼ିଲେ ଶୋଇ, ଧରିଲେ ଚରଣ,
ନିଦ୍ରାଭଙ୍ଗ ହୁଏ, ମୁନି ଫିଟାନ୍ତି ଲୋଚନ ।
ତୁଳସୀ ଦାସଙ୍କ ଗୁରୁ ସେହି ଭକ୍ତ ମୁନି,
ଶିଷ୍ୟଠୁଁ 'ରାମଚରିତ' ପ୍ରେମେ ଥିଲେ ଶୁଣି ।
ସେହି ନରହର୍ଯ୍ୟାନନ୍ଦ, ଧନ୍ୟ ତାଙ୍କ ଯଶ,
ଶିଷ୍ୟ-ମୁଖେ ଫୁଟାଇଲେ ପୁରାଣ ସରସ ।

---

## ବଂଶୀ ସଙ୍ଗ ବଂଶଧାରୀ କୋଦଣ୍ଡ ଧରିଲେ

ଆଦିକବି ବାଲ୍ମୀକି ଧରିଲେ ଶରୀର,
ତୁଳସୀ ଦାସ ରୂପରେ ନେଲେ ଅବତାର ।
ପିତା ତାଙ୍କ ଆତ୍ମାରାମ, ଜନନୀ ହୁଲସୀ,
ତୁଳସୀର ରୂପ ଦେଖି ଉଠିଲେ ଉଲ୍ଲସି ।

ଜନ୍ମ ହୋଇ ଶିଶୁ ତଳେ ନ କରେ ରୋଦନ,
ଜନ୍ମମାତ୍ରେ ଗଜୁରିଲା ଦ୍ୱିହଂଶ ଦଶନ ।
ଶିଶୁ ନାମ ତୁଳାରାମ ପିତାମାତା ଦେଲେ,
କାଳିନ୍ଦୀ-ପୁଣ୍ୟ-ସଲିଳେ ଦେହ ପଖାଳିଲେ ।
ଊନବିଂଶ ବର୍ଷ ତାରେ ବୈଦିକ ବିଧାନେ
ବୁଦ୍ଧିମତୀ ରତ୍ନାବଳୀ ପତି ରୂପେ ଘେନେ ।
ପତ୍ନୀଠାରେ ଦିନୁଁ ଦିନ ବଢ଼ଇ ପୀରତି,
ପତ୍ନୀ ଛାଡ଼ି ସ୍ଥିର ନୁହେ ତୁଳାରାମ-ମତି !

ଦେଖନ୍ତି, ସପନ ସୀତା, ରାମ, ଲକ୍ଷ୍ମଣ,
ସ୍ଫଟିକ ଶିଳାରେ ବସି କରନ୍ତି ଭୋଜନ ।
ଲକ୍ଷ୍ମଣଙ୍କୁ ରାମଚନ୍ଦ୍ର କହନ୍ତି ମଧୁରେ,
କନ୍ଦ, ମୂଳ, ଫଳ ନେଇ ଦିଅ ତ ମୁନିରେ ।
ଲକ୍ଷ୍ମଣେ ଉଠିବା ଦେଖି ମୁନି ଯୋଡ଼ି ହାତ,
ବିନୟେ କହନ୍ତି ବାଣୀ ପ୍ରେମାଶ୍ରୁ ଗଳିତ ।
"ମୋର ପୂଜ୍ୟ ଦେବ ! ଆଗ କରନ୍ତୁ ଭୋଜନ,
ଚରଣର ଦାସ ପରେ କରିବ ଭକ୍ଷଣ ।
ପତିତ-ଶେଷ-ପ୍ରସାଦ ପାଇଣ ଆଦରେ,
ଭାଗ୍ୟବାନ ମଣିବ ଏ ଦାସ କାଳେ କାଳେ ।
ରାମଚନ୍ଦ୍ର—ଏଭଳି ମୁନିଙ୍କୁ ହେଲେ ଦେବାକୁ ଉଚ୍ଛିଷ୍ଟ,
ଅସଙ୍ଗତ, ପିବ କିଏ, ହେବ କାର ଇଷ୍ଟ ?
ମୁନି—ଭଗବାନ ! ମୁଁ ତ ନିତ ଉଚ୍ଛିଷ୍ଟର ଖାଏ,
ଏ ତ ମୋର ନିତ୍ୟ କ୍ରିୟା, ନୂଆ କିଛି ନୁହେ ।
ଯୋଗବେଳ ଧ୍ୟାନ ମୂର୍ତ୍ତି, ପ୍ରତ୍ୟକ୍ଷ ଦର୍ଶନେ,
ନାହିଁ କିଛି ଭେଦାଭେଦ, ଦୁଇ ସମ ମଣେ ।
ବୈଦେହୀ—ଏ ତ ଭକ୍ତମୁନି, ବାବା ! ଦିଅ ତ ପ୍ରସାଦ,
ଦାସ୍ୟ ଭାବେ ପୂଜେ ସଦା ପ୍ରଭୁ ପଦ୍ମପାଦ ।
ଲକ୍ଷ୍ମଣ—'କାୟେନ ମନସା ବାଚା' ଅନ୍ୟ ଗତି ଯାର,
ନାହିଁ ତାର ପ୍ରସାଦରେ ନିତ୍ୟ ଅଧିକାର ।
ରାମଚନ୍ଦ୍ର—ସମସ୍ତଙ୍କ ହୃଦେ ଯଦି ଏକା ଅନୁକମ୍ପା,
ସମ୍ମତି ଭରୁଛି, ନାହିଁ କରିବ ମୁଁ କମ୍ପା !
ଲକ୍ଷ୍ମଣ ତୋଳିଣ ତନି ପତ୍ର କଲେ ଦାନ,
କୃତାର୍ଥ ହୋଇଲେ ମୁନି, ରଚିଲେ ଭୋଜନ ।

ସର୍ବାଙ୍ଗେ ପୁଲକ ଖେଳେ, ନେତ୍ରେ ଅଶ୍ରୁଝରେ,
ହସ୍ତ ମୁଖ ଧୋଇନେଲେ ଲୋତକ-ସଲିଳେ ।
ଭୂତଳେ ପଡ଼ିଲେ ଶୋଇ, ଧରିଲେ ଚରଣ,
ନିଦ୍ରାଭଙ୍ଗ ହୁଏ, ମୁନି ମିଟାନ୍ତି ଲୋଚନ ।
ତୁଳସୀ ଦାସଙ୍କ ଗୁରୁ ସେହି ଭକ୍ତ ମୁନି,
ଶିଷ୍ୟଠୁଁ 'ରାମଚରିତ' ପ୍ରେମେ ଥିଲେ ଶୁଣି ।
ସେହି ନରହର୍ଯ୍ୟାନନ୍ଦ, ଧନ୍ୟ ତାଙ୍କ ଯଶ,
ଶିଷ୍ୟ-ମୁଖେ ଫୁଟାଇଲେ ପୁରାଣ ସରସ ।

---

# ବଂଶୀ ଫିଙ୍ଗି ବଂଶଧାରୀ କୋଦଣ୍ଡ ଧରିଲେ

ଆଦିକବି ବାଲ୍ମୀକି ଧରିଲେ ଶରୀର,
ତୁଳସୀ ଦାସ ରୂପରେ ନେଲେ ଅବତାର ।
ପିତା ତାଙ୍କ ଆତ୍ମାରାମ, ଜନନୀ ହୁଲସୀ,
ତୁଳସୀର ରୂପ ଦେଖି ଉଠିଲେ ଉଲ୍ଲସି ।
ଜନ୍ମ ହୋଇ ଶିଶୁ ତଳେ ନ କରେ ରୋଦନ,
ଜନ୍ମମାତ୍ରେ ଗଜୁରିଲା ଦ୍ୱିତ୍ରିଂଶ ଦଶନ ।
ଶିଶୁ ନାମ ତୁଳାରାମ ପିତାମାତା ଦେଲେ,
କାଳିନ୍ଦୀ-ପୁଣ୍ୟ-ସଲିଳେ ଦେହ ପଖାଳିଲେ ।
ଊନବିଂଶ ବର୍ଷେ ତାରେ ବୈଦିକ ବିଧାନେ
ବୁଦ୍ଧିମତୀ ରତ୍ନାବଳୀ ପତି ରୂପେ ଘେନେ ।
ପତ୍ନୀଠାରେ ଦିନୁଁ ଦିନ ବଢ଼ଇ ପୀରତି,
ପତ୍ନୀ ଛାଡ଼ି ସ୍ଥିର ନୁହେ ତୁଳାରାମ-ମତି !

ପିତୃଗୃହେ ରତ୍ନାବଳୀ ଯାଇଥିଲେ ଥରେ,
ପତି ଆସି ଦେଖାଦେଲେ ରଜନୀ ଅନ୍ଧାରେ ।
ପତିଙ୍କର ଅଧୋଗତି ନ ପାରି ସମ୍ଭାଳି,
ଘୋର ସଙ୍କୋଚରେ ବୁଡ଼ି ଡିଆରିଲେ ବାଳୀ,
"ହାଡ଼-ମାଂସ ଶରୀରରେ ଏ ରସିକପଣ,
ହସେ ଅତି ଅସୁନ୍ଦର, ହସେ ନାଥ ଘୃଣ୍ୟ !
ଦଶରଥସୁତେ ଏଥୁଁ ଅଧେ ପ୍ରୀତି ଦେଲେ,
ଛୁଟିଯାନ୍ତା କର୍ମବନ୍ଧ, ଭବଭୟ ହେଲେ ।"
ଶତ ତୀକ୍ଷ୍ଣ ବାଣ ସେ କି ଭେଦିଲା ଅନ୍ତରେ,
କ୍ଷଣେ ପତ୍ନୀ ଛାଡ଼ି ପତି ଲୁଚିଲେ ତମିରେ ।
ତପ୍ତ ପ୍ରାଣ ଶୀତଳଣ ପ୍ରୟାଗ-ସଲିଳେ,
ଜୀବନବ୍ୟାପୀ ବୈରାଗ୍ୟ ତତ୍ପରେ ବରିଲେ ।
ଜଗନ୍ନାଥ, ରାମେଶ୍ୱର, ବଦ୍ରି ନାରାୟଣ,
ଦ୍ୱାରକାଦି ଚାରି ଧାମ କଲେ ପର୍ଯ୍ୟଟନ ।
ତୀର୍ଥାଟନେ ମଳ ଅଳ୍ପେ କ୍ରମେ ହେଲା ଦୂର,
ବଢ଼ିଲା ତିତିକ୍ଷା, ଫୁଟେ ବୈରାଗ୍ୟ ସୁନ୍ଦର ।
ନରହର୍ଯ୍ୟାନନ୍ଦେ ଧର୍ମ ଗୁରୁ କରି ପାଇ,
ଚଉଦ ବରଷ ପରେ କୃତାର୍ଥ ଗୋସାଇଁ ।
ତୁଳସୀ ଦାସ ନାମରେ ହେଲେ ପରିଚିତ,
ତୁଳସୀ ସୁବାସେ ହେଲା ପବିତ୍ର ଭାରତ ।
ନିଜର ତୁଙ୍ଗ ବିଭୂତି ସବୁ ପତ୍ନୀ ଦେନି,
ଚିର ଗୃହତ୍ୟାଗୀ ଥିଲେ ଆଜୀବନ ମାନି ।
ପ୍ରାତଃକାଳେ ଗଙ୍ଗାତୀରେ ଶୌଚକର୍ମ ସାରି,
ଗୋସାଇଁ ଢାଳନ୍ତି ତରୁ- ମୂଳେ ଶେଷ ବାରି ।

ସେ ତରୁରେ ପ୍ରେତ ଏକ · କରିଥିଲା ବାସ,
ତୁଳସୀଙ୍କ ଆଗେ ଦିନେ ହୋଇଲା ପ୍ରକାଶ ।
ପ୍ରେତ—ତୁମ ଜଳେ ତୃପ୍ତ ପ୍ରାଣ ମାଗି ଘେନ ବର,
ଗୋସାଇଁ—ଶ୍ରୀରାମ ଦର୍ଶନ ପାଇଁ ପରାଣ ଆତୁର ।
ପ୍ରେତ—ନିକଟେ ଗ୍ରାମର ଶେଷେ ଅଛଇ ମନ୍ଦିର,
ହୁଏ ରାମାୟଣ ଗାନ ଅତି ହିଁ ମଧୁର ।
ସାୟଂକାଳେ ପ୍ରତିନିତ୍ୟ ବହୁ ଲୋକ ମେଳ,
କୋଢ଼ୀ ବେଶେ ଆସୁଛନ୍ତି ଅଞ୍ଜନା-ଦୁଲାଳ ।
ସମସ୍ତଙ୍କ ଆଗେ ଆସି ଯାଆନ୍ତି ପଛରେ,
ପୂର୍ଣ୍ଣ ହେବ ଇଚ୍ଛା, ଦୃଢ଼େ ଧର ସେ ପୟରେ ।
ପ୍ରେତ କଥାରେ ମନ୍ଦିରେ ଗମିଲେ ଗୋସାଇଁ,
କୁଷ୍ଠରୋଗୀ ହନୁମାନେ ନେଲେ ଠଉରାଇ ।
ପୁରାଣ ସରିଲା ଯହୁଁ · ଖସିଲା ଗହଳ,
ଗୋସାଇଁ ଧରିଲେ ହନୁ ଚରଣ କମଳ ।
ହୃଦୟ ଫଟାଇ କଲେ କରୁଣ ରୋଦନ:
କାନ୍ଦରେ ତରଳିଗଲେ ଅଞ୍ଜନା-ନନ୍ଦନ ।
ହନୂମାନ—ଯାଅ ବାବୁ ! ଚିତ୍ରକୂଟେ ମିଳିବ ଦର୍ଶନ ।
ଦେଖୁ ଦେଖୁ ଅନ୍ତର୍ହିତ ହେଲେ ହନୂମାନ ।
ଗୋସାଇଁ ଚଳିଲେ ଚିତ୍ରକୂଟ ପ୍ରେମଭରେ;
ବୁଲୁଛନ୍ତି ଦିନେ ଘୋର ବନସ୍ତ ଭିତରେ ।
କଳା ଧଳା ଦୁଇ ଅଶ୍ୱେ ଦୁଇ ଯୋଦ୍ଧୃବର,
ଏକ ନବଘନ-ଶ୍ୟାମ, ଆରେକ ଗଉର ।
ଶିରେ ସୁବର୍ଣ୍ଣ ମୁକୁଟ, ଧନୁଶର ହାତେ,
ଧାଇଁଛନ୍ତି କ୍ଷିପ୍ରଗାମୀ ହରିଣ ପଶ୍ଚାତେ ।

ହନୂମାନ ଉଭା ହୋଇ  ପୁଚ୍ଛନ୍ତି ହରଷେ,
"ଦେଖିଲୁ କି ବାବା କେବେ  ଅଯୋଧ୍ୟା-ନରେଶେ ?"
ଗୋସାଇଁ—ଦେଖିଲି ତ ରାଜପୁତ୍ରେ,  ଦୁଇ ଅଶ୍ୱପରେ
ଧାଇଁଛନ୍ତି କ୍ଷିପ୍ରଗାମୀ  ହରିଣ ପଛରେ ।
ଦୁହେଁ ତ କୋଦଣ୍ଡଧାରୀ  ଶ୍ୟାମ ଗୌର ତନୁ,
ଅତୁଳ୍ୟ ଲାବଣ୍ୟଭରା,  ଯିବେ ନାହିଁ ମନୁଁ ।
ହନୂମାନ—ସେ ଦୁହେଁ ରାମ ଲକ୍ଷ୍ମଣ,  ଦଶରଥସୁତ,
ଦର୍ଶନ ଦେଇଣ ତୋରେ  କଲେ ରେ କୃତାର୍ଥ ।
ଚିତ୍ରକୂଟ ଘାଟେ ଥରେ  ଘୋରନ୍ତି ଚନ୍ଦନ,
ମୁଖୁ ଫୁଟି ଖେଳୁଅଛି  ରୁହୁ ରାମ ନାମ ।
ଶ୍ରୀରାମ ସମ୍ମୁଖେ ଆସି  କାହିଁ ଉଭାହେଲେ,
ମାଗନ୍ତି ଚନ୍ଦନ ହସି,  ଗୋସାଇଁ ଦେଖିଲେ ।
ଅନୁପ ରୂପରାଶିରେ  ଲୀନ ହେଲା ମନ,
ପରାଣ ବିହ୍ୱଳ ପ୍ରେମେ,  ହଜିଗଲା ଜ୍ଞାନ ।
ରାମନବମୀରେ ଆଜ୍ଞା  ଦେଲେ ହନୂମାନ,
"ରାମଚରିତ ମାନସ  କର ପ୍ରଣୟନ ।"
ସେହି ଶୁଭଦିନେ ଲେଖି  ବସିଲେ ଗୋସାଇଁ,
ଦୁଇ ବର୍ଷ ସାତ ମାସ  ଲେଖୁ କଟିଯାଇ ।
ଆହୁରି ଛବିଶ ଦିନେ  ହେଲା ସମାପତ,
ତୁଳସୀଙ୍କ ରାମାୟଣ  ପୀୟୂଷ-ପୂରିତ ।
ହନୂମାନ ପାଶେ ବସି  ପୂର୍ଣ୍ଣ ରାମାୟଣ,
ତୁଳସୀ ମଧୁର ମୁଖୁଁ  କରିଣ ଶ୍ରବଣ,
ହେଲେ ପ୍ରେମୋନ୍ମତ୍ତ; ଦେଲେ  ସୁଆଶିଷ ଢାଳି,
"ତୁଳସୀ ! ତୋ ରାମାୟଣ  ଭକତସଂଖାଳି ।

ହେବ କାଳ କାଳ, ତୋହର ମାରତ ପ୍ରଦୀପ
ସବୁଦିନ ଜଳୁଥିବ, ହେବ ନାହିଁ ଲୋପ ।"
ସେହିର କରିବାକୁ ଥରେ ତୁଳସୀଙ୍କ ଘରେ,
ଆସିଥିଲେ ଚୋର, ସେହୁ ଦେଖିଲେ ନେତ୍ରରେ ।
ଶ୍ୟାମସୁନ୍ଦର ବାଳକ, ହାତେ ଧନୁବାଣ
ପହରାଦିଅନ୍ତି, ଭୟେ ଗଲେ ଲେଉଟିଣ ।
ଆଉ ଥରେ ଆସି ସେହି ବାଳକେ ଦେଖନ୍ତି,
ସକାଳେ ଗୋସାଇଁ ଦେଖି, ବାଟେ ପଚାରନ୍ତି ।
"ଆପଣଙ୍କ ଘରେ ଶ୍ୟାମ ସୁନ୍ଦର ବାଳକ ।
କିଏ ସେ ଦିଏ ପହରା ନିତି ରାତିଯାକ ?"
ଗୋସାଇଁ ବୁଝିଲେ, "ଛାର ଭୃତ୍ୟଦ୍ରବ୍ୟ ପାଇଁ,
ପହରା ଦିଅନ୍ତି ନିତି ବ୍ରହ୍ମାଣ୍ଡ-ଗୋସାଇଁ !"
ଲୁଟାଇଲେ ଧନଦ୍ରବ୍ୟ, ଛାଡ଼ିଦେଲେ ଘର,
ସେଦିନୁ ତୁଳସୀ ଆଶ୍ରା କଲେ ବୃକ୍ଷତଳ ।
ଥରେ ସୁଭୂଷିତା କେହୁ ରୂପସୀ ଯୁବତୀ,
ଗଙ୍ଗାଘାଟରେ ଗୋସାଇଁରେ ବିହ୍ୱଳ ପ୍ରଣତି ।
ଗୋସାଇଁ—ଶିରରେ ସିନ୍ଦୂର ମାଆ ! ରହୁ ତୋ ଉଜ୍ଜ୍ୱଳ,
ବାଳବଚ୍ଛ ନେଇ ସୁଖେ କର ତୁ ସଂସାର ।
ଯୁବତୀ—ସ୍ୱାମୀ-ଚିତାରେ ତ ସତୀ ଯାଉଅଛି ମୁହିଁ,
ଆପଣଙ୍କ ଏ ଆଶିଷ କି ହେବ ଗୋସାଇଁ ?
ଗୋସାଇଁ—ଏ ମୁଖରୁ ନ ବାହାରେ କେବେ ତ ଅସତ୍ୟ,
ପତି ମୃତ ନୁହେ, ମାଆ ! ଦେଖିବା ଚାଲ ତ ।
ଗୋସାଇଁ ସଙ୍ଗତେ ବାଳୀ ଚଳିଲା ଶ୍ମଶାନେ,
କୋକେଇ ଖୋଲିଣ ଲୋକେ ଦେଖନ୍ତି ଯତନେ ।

ନାଡ଼ି ତ ଚଳୁଛି, ମୃତ ଫିଟାଏ ଲୋଚନ,
ଗୋସାଇଁଙ୍କି ଘେରି ସର୍ବେ କଲେ ଧନ୍ୟ ଧନ୍ୟ ।
ଶତ ନାରୀ କଣ୍ଠୁ ହର୍ଷେ ଶୁଭେ ହୁଳହୁଳି !
ପ୍ରେମେ ଶ୍ମଶାନରୁ ସତୀ ଫେରେ ପତି ଘେନି ।
ଏ ସମ୍ବାଦ ଲୋକମୁଖେ ଶୁଣି ବାଦଶାହ,
ଗୋସାଇଁଙ୍କି ଡକାଇଲେ ପେଷି ବାର୍ତ୍ତାବହ ।
କହିଲେ, "ଦେଖାଅ ଯୋଗି ! ଆଛା ଇନ୍ଦ୍ରଜାଲ,
କହୁଛନ୍ତି ଲୋକେ, ତୁମେ ମଲା ଜିଆଇଲ ।
ଗୋସାଇଁ—ଆତ୍ମବଳ ଥିଲା ତାର, ଉଠିଲା ସେ ଗାଇଁ,
ଖେଳା ନୁହେଁ, ଇନ୍ଦ୍ର ଜାଲ ନ ଜାଣଇଁ ମୁହିଁ ।
ରାମ ନାମ ଛଡ଼ା ମୁଁ କି ଜାଣେ କରାମତ ?
ମିଥ୍ୟା କଥା, ମିଥ୍ୟା କଥା, ନାହିଁ ତିଳେ ସତ ।
ବାଦଶାହ—ଭିଖାରୀ ବାବାଜି ଗୁର ଦେଖନା ଗୁରୁତ୍ୱ !
ନ ଦେଖାଉ କରାମତ, ରଖ ବନ୍ଦୀ କରି ।
ବନ୍ଦୀ ଘରେ ପଡ଼ି ସ୍ତୁତି କରନ୍ତି ଗୋସାଇଁ
ହନୁମାନେ; ଅଳ୍ପକ୍ଷଣେ ଆସିଲେ ସେ ଧାଇଁ ।
ହନୁ ସୈନ୍ୟ ଗୃହେଁ ଗୃହେଁ ରଚିଲେ ପ୍ରଳୟ,
କୋଠାଘର ଗୁଣ୍ଡାକଲେ ସରବେ ଅଥୟ ।
ବାଦଶାହ କରାମତ ଦେଖେ ଥରି ଥରି,
ବନ୍ଦୀଶାଳେ କାନ୍ଦି କାନ୍ଦି ଯୋଗୀପାଦ ଧରି,
ଗୋସାଇଁଙ୍କ ପାଦତଳେ ବାଦଶାହ ଗଡ଼ି,
ଗଳଦଶ୍ରୁ ନୟନରେ ଦୁଃଖେ କ୍ଷମା ଲୋଡ଼ି ।
ବାରାଣସୀରେ ଗୋସାଇଁ ଥିଲେ କିଛି ଦିନ,
ପାହାନ୍ତି ପହରୁ ଉଠି ଗଙ୍ଗା ଘାଟେ ସ୍ନାନ

ସାରି, ରାମ ନାମ ଜପି ଫେରନ୍ତ ବାଟରେ,
ବ୍ରାହ୍ମଣାଶ, ମହାପାପୀ ଉଦ୍ବେ ଆନନ୍ଦରେ ।
କବେ ଗୋସାଇଁଙ୍କ ପ୍ରତି ଜନନେ ଭକତ,
ଗଙ୍ଗାଘାଟେ ଯାଇଁ, ତାଙ୍କ ମାର୍ଗ ଦେଖେ ନିତ ।
ଦିନେ ଆସୁଁ ସ୍ନାନ ସାରି, ଟଣାଇଲା ଆବୋରି
ପଥ; ସ୍ୱାମୀ ନାମ ଜପି ଆସୁଛନ୍ତି ଫେରି ।
ଝୁଣ୍ଟିଣ କହନ୍ତି ସ୍ୱାମୀ ରାମ, ରାମ, ରାମ,
ଆନନ୍ଦେ ଉଠିଣ ପାପୀ ଧଇଲା ଚରଣ ।
ପାପୀ—ମୁଁ ଯେ ମହାପାପୀ ଗୁରୁ ! ବ୍ରହ୍ମହା, ଗୃଣ୍ଡାଳ,
ଶ୍ରୀମୁଖରେ ରାମମନ୍ତ୍ର ଦେଲ କର୍ଣ୍ଣେ ମୋର ।
ମିଳୁ ଆଶୀର୍ବାଦ, ଧରି ଏହି ମନ୍ତ୍ର ବଳ
ଧୋଇବି ସକଳ ପାପ ହେବି ମୁଁ ନିର୍ମଳ ।
ଆନନ୍ଦେ କହିଲେ ଗୁରୁ, "ହୁଅ ସିଦ୍ଧକାମ",
ଅନୁସରେ ପାପୀ ପ୍ରେମେ ଜପି ରାମ ନାମ ।
ମଣ୍ଡଳୀରେ ନେଲେ ଗୁରୁ କରିଣ ଆଦର,
ଦିନେକ କହନ୍ତି ହର୍ଷେ, "ପାପ ହେଲା ଦୂର,
ରହ ସୁଖେ, ରାମ ନାମ କର ତୁ ଭରସା;
ରାମ ନାମେ ପୂରିବ ତୋ ସର୍ବ ଶୁଭ-ଆଶା ।"
କାଶୀର ପଣ୍ଡିତଗଣେ ପଡ଼ିଲା ବିଗୁରି,
"ରାମ ନାମେ ତରିଗଲା ବ୍ରହ୍ମହା ଗୃଣ୍ଡାଳ !
ଦେଉ ସେ ଆସି ପରୀକ୍ଷା ସେବେ ପାପହୀନ,
ପ୍ରସ୍ତର-ଦେବ-ବୃଷଭ ତା ହସ୍ତୁଁ ଗ୍ରହଣ
କରୁ ତ ତୃଣ-କବଳ ; ତା ହେଲେ ଜାଣିମା,
ଶିଷ୍ୟ ପାପହୀନ, ଗୁରୁ ଅତୁଲ୍ୟ ମହିମା ।"

ଚୁଲିଲା ସେ ପାପୀ ହସ୍ତେ ଧରି ତୃଣ ଗ୍ରାସ,
ଷଟେଶ୍ୱର ମନ୍ଦିରରେ ହୋଇଲା ପ୍ରବେଶ ।
ରାମ ନାମ ଜପି, ବୃଷ- ମୁଖେ ତୃଣ ଧରେ,
ବୃଷଭ ଫିଟାଏ ପାଟି, ସୁଖେ ଗ୍ରାସ କରେ ।
ଯାଇଥିଲେ ସ୍ୱାମୀ ଥରେ ବୃନ୍ଦାବନ ଧାମ,
ମନ୍ଦିରରେ ପଶିଗଲେ ଜପି ରାମ ନାମ ।
ଗୋସ୍ୱାମ - -ନାଲ ରାଜ ବଂଶୀଧାରୀ, ତ୍ରିଭଙ୍ଗ-ମୂରତି,
କୋଦଣ୍ଡ ନ ନେଲେ ହାତେ, ନ ରଚେ ପ୍ରଣତି ।
ବଂଶୀ ଫିଙ୍ଗି ବଂଶୀଧାରୀ କୋଦଣ୍ଡ ଧରିଲେ,
ପ୍ରେମେ ହୋଇ ଭୋଳା ସ୍ୱାମୀ ଚରଣେ ଲୋଟିଲେ ।
ଷୋଳଶ ଅଶୀ ସମ୍ବତ ଶ୍ରାବଣ ମାସରେ,
ଶୁକ୍ଳ ସପ୍ତମୀ ନିଜ ଅସି ଘାଟଠାରେ ,
ଏକଶ ନବଶ ବର୍ଷ ଜୀର୍ଣ୍ଣ କଳେବର
ତେଜି ଯୋଗୀ ଗଲେ ଚଳି ଅନାମପୁରର ।

---

# ବିଷପାତ୍ରରେ ରତ୍ନପୁଷ୍ପ

‘ପୁରନ୍ଦରଗଡ଼’ ନାମେ ପ୍ରସିଦ୍ଧ ନଗର,
ପଣ୍ଡରପୁର ନିକଟେ ଧନିକର ଘର ।
ବରଦାପ ନାମେ ଏକ ମନ୍ତ ବ୍ରାହ୍ମଣ
ରହେ ତହିଁ, ବ୍ୟବସାୟୀ ମାଣିକ୍ୟ ରତନ ।
ଏକମାତ୍ର ପୁଅ ତାର, ନାମ ଶ୍ରୀନିବାସ,
ବ୍ୟବହାରେ ଖେଳେ ବୁଦ୍ଧି, ଅପୂର୍ବ ସାହସ ।

ବିଜୟ ନଗର ଗୋଲ- କୁଣ୍ଡା ମଲ୍ଲିକରେ,
ବହୁମୂଲ୍ୟ ମଣି ରତ୍ନ ହୀରା ବେପାରରେ
ଶ୍ରୀନିବାସ ସରି ସମ ନ ଥିଲେ ତ କେହି,
ପିତାଙ୍କ ସମ୍ପତ୍ତି ବହୁ ଗୁଣ କଲା ସେହି ।
ଲକ୍ଷ୍ମୀଙ୍କର ବରପୁତ୍ର, କୁବେରନନ୍ଦନ
ବୋଲି, ଖଣ୍ଡମଣ୍ଡଳରେ ଅରଜେ ସମ୍ମାନ ।
ମଦ୍ୟ ପାନେ ମଦ୍ୟ ପାଇଁ ବଢ଼ଇ ପିପାସା,
ଧନ ବୃଦ୍ଧି ସଙ୍ଗେ ବଢ଼େ ଧନର ଲାଲସା ।
ଦୟା, କ୍ଷମା, ଉଦାରତା, ଲୁଚଇ ସଦ୍‌ଗୁଣ,
ବ୍ୟୟକୁଣ୍ଠ ହୁଏ ଲୋକ, ନିପଟ କୃପଣ ।
ଅର୍ଥ ମୋହ ଭୂତ ପରି ଗ୍ରାସକରେ ତାରେ,
ଦାନ ଧର୍ମ ଲୋପ ହୁଏ, ମନୁଷ୍ୟତା ସରେ ।
ଶ୍ରୀନିବାସ ଯେତେ ଯେତେ ବିଭବ ବଢ଼ାଏ,
ସ୍ନେହ, ପ୍ରୀତି, ଦୟା ଯାଇ ଯକ୍ଷ ସେ ତ ହୁଏ ।
ଦୁଆରୁ ମୁଠାଏ ଭିଖ ନ ପାଇ ଭିଖାରୀ,
ନିରାଶାରେ ଫେରେ ହସି, ବିଷ୍ଣୁ ନାମ ସ୍ମରି ।
ନ ଦେଇ, ନ ଖାଇ ଯକ୍ଷ ପରି ଯେ ସଞ୍ଚଇ,
ପୋଡ଼ୁ ତା କୃପଣ ମୁଖ ଦେଖି ନ ଯୋଗାଇ ।
ତା ନାମ ଶୁଣିଲେ ଲୋକେ ମୁଦନ୍ତି ଶ୍ରବଣ,
କହନ୍ତି ଘୃଣାରେ, "ଆଜି ନ ମିଳିବ ଅନ୍ନ ।"
ଛି ଛି କରୁଥାନ୍ତି ପଛେ, ଡରନ୍ତି ଆଗରେ,
ଶ୍ରୀନିବାସ ଘୃଣ୍ୟ ହେଲା ଜଗତ ଦୃଷ୍ଟିରେ ।
ପୂର୍ବ ଜନ୍ମେ କରିଥିଲା କିବା ତପ ଅତି,
ତାର ଦୁର୍ଦ୍ଦଶାରେ ଘାବ- ହେଲେ ବିଶ୍ୱପତି ।

ଦରିଦ୍ର ବ୍ରାହ୍ମଣ ବେଶେ    ହେଲେ ଉପସ୍ଥିତ,
ଦୋକାନରେ, ହୀରା-ମାଳା-    ମାଣିକ୍ୟଶୋଭିତ ।
ବ୍ରାହ୍ମଣ—କାଙ୍ଗାଳ ବ୍ରାହ୍ମଣ ବାବା !    ତୁ ତ କୋଟିପତି,
ତୋ ଦୁଆରେ ହାତପାତି    କରୁଛି କାକୁତି ।
କନ୍ୟାର ବିବାହଯୋଗ୍ୟ    ବୟସ ତ ହେଲା,
ହାତରେ ମୋ ନାହିଁ ଧନ,    ସାହା ହୁଅ ଭଲା !
ଈଶ୍ୱର ତୋହର ସଦା    କରିବେ ମଙ୍ଗଳ;
ଏ ଧରମେ ତୋ ଜୀବନ    ହୋଇବ ଉଜ୍ଜ୍ୱଳ ।
ଶ୍ରୀନିବାସ—ଆଚ୍ଛା, ଆଜି ଯାଅ, ନାହିଁ    ଶୁଣିବାକୁ ବେଳ,
କାଲି କି ଆସିଲେ କିଛି    କରିବା ବିଚାର ।
କାଲି ଆସିଲା ବ୍ରାହ୍ମଣ,    ମାଗେ କିଛି ଧନ,
ପୁଣି ସଜ ନାହିଁ ବୋଲି    କରଇ ବାରଣ ।
ଶ୍ରୀନିବାସ କାଲି କାଲି    ହୋଇ ଛଅ ମାସ
ଗଲା, ବ୍ରାହ୍ମଣର କେବେ    ନ ପୂରିଲା ଆଶ ।
ଶ୍ରୀନିବାସ ଅତି କ୍ରୁଦ୍ଧ,    ଆଣେ ଥଳୀ ଦୁଇ
ଘଷର ପଇସାଭରା,    ଦିଏ ଆଗେ ଥୋଇ ।
କହେ, "ଏହି ଦୁଇଟିରୁ    ଯାହା ଇଚ୍ଛା ନିଅ,
ଜଞ୍ଜାଳରୁ କର ରକ୍ଷା,    ବେଗେ ଦୂର ହୁଅ ।
ପ୍ରଭୁ ବହୁ କ୍ଷଣ ରହିଁ    ରହିଲେ ବଦନେ,
ରଦ୍ଧି ପଇସା ନ ନେଇ    ଚଳିଲେ ମଉନେ ।
ଲମ୍ବେ ଲମ୍ବେ ଗଲେ ପ୍ରଭୁ    ବଣିକ ଭବନେ,
ପତ୍ନୀରେ କହିଲେ ଦୁଃଖୀ    ବିନୟ ବଚନେ ।
କହିଗଲେ ପତିଙ୍କର    ବ୍ୟବହାର ଯେତେ,
ପ୍ରଥମୁଁ ରଦ୍ଧି ପଇସା    ଥଳୀ ପରସଙ୍ଗେ ।

ଶେଷେ କହିଲେ, "ଆସିଲା    ଛୋଟେ ଆଶା କରି,
ବୁଢ଼ା ବ୍ରାହ୍ମଣକୁ କନ୍ୟା-    ଦାୟୁଁ କର ପାରି ।"
ବଣିକପତ୍ନୀର ମନ    ସ୍ୱଭାବେ ଉଦାର,
ବ୍ରାହ୍ମଣର ଦୁଃଖ ଶୁଣି    ବହେ ଅଶ୍ରୁଧାର ।
ପତିଙ୍କର କୃପଣତା    ଦେଖି କ୍ଷୋଭ ହୁଏ,
ଶୁଭବୁଦ୍ଧି ଦେବା ପାଇଁ    ପ୍ରଭୁଙ୍କୁ ଜଣାଏ ।
ଏନ ବ୍ରାହ୍ମଣର ଦୁଃଖେ    ଢାଳିହୁଏ ମନ,
କି କରିବ ଅବଳା ସେ,    ହାତେ ନାହିଁ ଧନ ।
ପିତୃଦତ୍ତ ଧନସବୁ    ଦାନ ଧରମରେ
ସାରିଥିଲା, କି ଉପାୟ    ମନରେ ଚିନ୍ତରେ ।
ପିତୃଦତ୍ତ ଅଳଙ୍କାର    ନାସାରେ ତା ଥିଲା,
ବହୁମୂଲ୍ୟ ରତ୍ନଫୁଲ    ମନରେ ଭାବିଲା,
ବ୍ରାହ୍ମଣ ଦେବତା ହାତୁଁ    ଯିବେ ଶୂନ୍ୟହାତେ,
କୋଟି-ଜୀବ-ପଡ଼ିଦାତା    କି ଭାବିବେ ମୋତେ !
'କୃଷ୍ଣାର୍ପଣମସ୍ତୁ' କହି    ପରମ ଆଦରେ,
ଟେକି ଦେଲା ରତ୍ନଫୁଲ    ବ୍ରାହ୍ମଣ ହାତରେ ।
ଶ୍ରୀନିବାସ ମନେ, ଗଲା    ବ୍ରାହ୍ମଣ ଜଞ୍ଜାଳ,
ବ୍ରାହ୍ମଣ ଆସେ ଦୋକାନେ    ଧରି ରତ୍ନଫୁଲ !
କହଇ ଏ ନାକଫୁଲ    କରିଦିଅ ମୂଲ,
ଦିଅ ନ କରିଣ ଊଣା    ଗୃହେଶ ମୋହର ।
ପତ୍ନୀ ନାକଫୁଲ କ୍ଷଣେ    ଚିହ୍ନିଲା ବଣିକ,
କି କଲା ବାମୁଣୀ, ପ୍ରାଣେ    ପଶିଗଲା ଦକ ।
ବହୁମୂଲ୍ୟ ନାକଫୁଲ    ଦିଏ ନ ବିଗୁରି,
ପଥର ବାନ୍ଧିଣ ବେକେ    କେ ପାରେ ପହଁରି ?

ବ୍ରାହ୍ମଣେ କହଇ, "ଫୁଲ    ଥାଉ ପାଖେ ମୋର,
କାଲି ଆସ, ଦେବି ମୁହିଁ    ଶତେକ ମୋହର ।"
ନାକଫୁଲ ବନ୍ଧକଲା    ଲୁହା ସିନ୍ଦୁକରେ,
ତାଲି ଦେଇ ଆସନ୍ତେ, ଘରେ    ପତ୍ନୀ ପାଶେ ଚଳେ ।
ପଚାରେ ବସୁନ୍ତେ, ତୋର    ନାକଫୁଲ କାହିଁ ?
ସକାଳେ ତ ଥିଲା ନାକେ,    ଏବେ ଦିଶୁ ନାହିଁ !"
କି ଉତ୍ତର ଦେବ ନାରୀ,    ଜାଣେ ପତି ଗୁଣ,
ଘଟିଲେ ତ ଅସମ୍ଭାଳ,    ରହିଲା ମଉନ ।
ଶ୍ରୀନିବାସ ଗରଜଣ    କହେ କ୍ରୋଧଭରେ,
"ନାକଫୁଲ ଆଣ ବେଗେ    ଦିଅ ମୋ ହାତରେ ।
ନୋହିଲେ ବିଷମ ଫଳ    ଏଥୁ ହେବ ଜାତ,
ମାରି ପୋତିଦେବି ହାତେ,    ନ ରଖିବେ ତାତ"
"ନାକଫୁଲ ଅଛି ଘରେ,"    କହଇ ରମଣୀ,
ଘର ଭିତରକୁ ଗଲା    ବିଭୁ ନାମ ଗୁଣି ।
ଆତ୍ମହତ୍ୟା ଛଡ଼ା ତାର    କି ଥିଲା ଉପାୟ ?
ବିଷପାନ କରେ ଧରି    କହେ, "ଦୟାମୟ !
ତୁମରି ତୃପତି ପାଇଁ    ଦେଲି ନାକଫୁଲ,
ବ୍ରାହ୍ମଣର ହାତେ ଟେକି,    ଜାଣୁ ତୁ ସକଳ ।
କୃପାକରି ବଦଳାଅ    ସ୍ୱାମୀଙ୍କର ମନ,
ବ୍ରାହ୍ମଣ ଦେବତା ଦେଖି    କରନ୍ତୁ ସମ୍ମାନ ।
ଅର୍ଥମୋହ କଟୁ, ତବ    ଅଭୟ ପୟରେ
କରନ୍ତୁ ମସ୍ତକ ନତ    ଶୁଦ୍ଧ ଭକ୍ତିଭରେ ।
ମରଣକୁ ଅବଳାର    ନାହିଁ ତିଳେ ଭୟ,
ଚରଣ କମଳେ ନାଥ !    ନେଇଛି ଆଶ୍ରୟ ।"

ସୂଣ୍ଡକର ବକ୍ଷପାଶ ଟେକୁଅଛି ମୁଖେ,
କିସ ନଡ଼େ ପାଶ ମଧ୍ୟେ ଅଦ୍ଭୁତେ ଦେଖେ
ନିଜ ନାକ ରତ୍ନଫୁଲ, କାହୁଁ ଏ ଅଇଲ ?
କେହି ନାହିଁ, ବନ୍ଧଗୃହ, କି ବିଚିତ୍ର ଲୀଳା !
ନାସ୍ତି ହେଲ ଭବେ ଭୋଳା, ଲୁହ ପଡ଼େ ଝରି,
ଅଙ୍ଗେ ଅଙ୍ଗେ ଯାଏ ପ୍ରେମେ ପୁଲକ ସଞ୍ଚରି ।
ବିଷ୍ଣୁକୃପା ସାକ୍ଷାତ୍କାର ପାଇ ନାସ୍ତିବର,
ରଚଇ ଶତ ପ୍ରଣତି, ଛଳେ ପିଟେ ଶିର ।
ଗୈବାଏ ରକ୍ତଗୁଣ୍ଡଳ ଶ୍ରୀନିବାସ ତେଣେ,
କ୍ରୋଧେ ଦନ୍ତେ ଓଷ୍ଠ ଚୂପି ଭାବେ ମନେମନେ ।
"ସିନ୍ଦୁକରେ ଏଇ ହାତେ ରଖେ ରତ୍ନଫୁଲ,
'ଘରେ ଅଛି' କହେ ବେଷ୍ଠୀ କରୁଅଛି ଗେଲ ।
ବ୍ରାହ୍ମଣ ସକାଳେ ଆସୁ ପାଇବ ସେ ପାନେ,
ଶ୍ରୀନିବାସ କବା ଜନ୍ତୁ ରଖିଥିବ ମନେ ।"
ରତ୍ନଫୁଲ ହାତେ ପତ୍ନୀ ପାଶେ ହୁଏ ଉଭା,
ପତି ହାତେ ଦିଏ ହସି, ଖେଳିଯାଏ ବିଭା ।
ଆଶ୍ଚର୍ଯ୍ୟର ପରସୀମା ନ ରହେ ପରାଣେ,
ଶ୍ରୀନିବାସ ଅଣଶ୍ୱାସେ ଦଉଡ଼େ ଦୋକାନେ ।
ଦେଖେ, ସିନ୍ଦୁକ ତ ବନ୍ଦ ଅଛି ସେହିପରି ,
ମଧ୍ୟେ ରତ୍ନଫୁଲ ନାହିଁ କିଏ ନେଲା ହରି ?
ଏ ଅଦ୍ଭୁତ ଇନ୍ଦ୍ରଜାଲ ଭିଆଇଲା କିଏ ?
ବୁଦ୍ଧିବଣା ହେଲା, ହୃଦେ ଘୁରୁ ଧକ୍କା ପାଏ ।
ଗର୍ବ ମଉଳିଲା, ଫେରେ ନତକରି, ଶିର
ପତ୍ନୀ ହାତେ ରତ୍ନଫୁଲ ଦେଇ ଭାବେ ଗୀର ।

"କହ ଲକ୍ଷ୍ମୀ ! ସତ କଥା    କିବା ଏ ଘଟଣା ।
ଆଶ୍ଚର୍ଯ୍ୟରେ ଗଲି ବୁଡ଼ି,    ବୁଦ୍ଧି ହୁଏ ବଣା ।
ରତ୍ନଫୁଲ ନେଲୁ ଯେହୁ,    କିଏ ସେ ବ୍ରାହ୍ମଣ ?
ସେହି ଫୁଲ ପୁଣି ଫେରି    ପାଇଲୁ କେସନ ?
ପତିଙ୍କ କାତରସ୍ୱର    ବିଶ୍ୱାସ ଭଷଣ
ଶୁଣି, ଲକ୍ଷ୍ମୀ କଲୁ ସବୁ    ଘଟଣା ବର୍ଣ୍ଣନ ।
ଶ୍ରୀନିବାସ ମୁଖ ଫୁଟେ    ବିକଳ ପ୍ରାର୍ଥନା,
"ବିଶ୍ୱେ ! ଦୟାମୟ ! କରି    ଅପାର କରୁଣା
ରକ୍ଷାକଲ ପତ୍ନୀପ୍ରାଣ    ମରଣ-ମୁଖରୁ,
ଧନ୍ୟ ତବ ଦୟା ! ଧନ୍ୟ    ଭକ୍ତକଳ୍ପତରୁ !
ମୁଁ ତ ଲୋଭୀ, ମହାପାପୀ    କପା ଦୟା ବହି,
ଦରିଦ୍ର ବ୍ରାହ୍ମଣ ବେଶେ    ଆସିଥିଲ ଧାଇଁ ?
ଏ ମୋର ଚଣ୍ଡାଳ ପ୍ରାଣ    ଠେଲିଲୁ କି ତଳେ,
ବଇକୁଣ୍ଠସାଇଁ ନାଥ    ଦେଖିଣ ଦୁଆରେ !
ପତ୍ନୀ ପୁଣ୍ୟମୟୀ ସତୀ,    ତାରି ପୁଣ୍ୟ ବଳେ,
ଅଭ୍ରୁ ତ ଦେଖିଲି ନେତେ,    ଚିହ୍ନିଲି ତ ତୋରେ !"
ପତି ସ୍ତମ୍ଭୀଭୂତ, ପତ୍ନୀ    ମୁଖେ ରହେ ଚାହିଁ,
ବହୁ ବେଳ ଧରି ମୁଖେ    ବଚନ ତ ନାହିଁ ।
ସ୍ନାନସାରି ପତ୍ନୀ ସଙ୍ଗେ    ପୂଜାକରି ବସେ,
କୃଷ୍ଣନାମ ଫୁଟେ ମୁଖୁଁ,    ଅଶ୍ରୁଜଳେ ଭାସେ ।
ତୁଳସୀଦଳ ସଜାଳି    ଅଞ୍ଜଳିରେ ଧରି,
'କୃଷ୍ଣାର୍ପଣମସ୍ତୁ' ପ୍ରେମେ    ବଦନେ ଉଚ୍ଚାରି,
ବିଭୁ ଚରଣ-କମଳେ    ସକଳ ସମ୍ପତ୍ତି
ଅରପିଣ ଦେଲେ ତତ୍ତ୍ୱେ    ଭକତ-ଦମ୍ପତ୍ତି ।

ଡାକଆଣି ଦୀନଦୁଃଖୀ    କାଙ୍ଗାଳ ବ୍ରାହ୍ମଣ,
ଲୁଟାଇଲେ ମଣିମୁକ୍ତା    ରତନ କାଞ୍ଚନ ।
ପତ୍ନୀ ପାଇଁ କପର୍ଦ୍ଦକ    ମାତ୍ର ନ ରଖିଲେ,
ସୁନା ସିନ୍ଦୂର ଫରୁଆ    କାଢ଼ି ଫିଙ୍ଗିଦେଲେ ।
ପୂର୍ଣ୍ଣ ପରବ୍ରହ୍ମ ଗ୍ରଡ଼    କରି ନାମ ଗାନ,
ପତ୍ନୀ ପୁତ୍ର ଧରି ପଥେ    କରନ୍ତି ଗମନ ।
ପହଞ୍ଚି ପଣ୍ଡରପୁରେ    ବିଠଲ ଚରଣେ,
ଅରପିଦେଲେ ପରାଣ,    ମାୟାହୀନ ମନେ ।
ଭିକ୍ଷା କରି ଦ୍ୱାରେ ଦ୍ୱାରେ    କଟାଇଲେ ଦିନ,
ଦାରିଦ୍ର୍ୟର ଘୋର ଦୁଃଖ    କରିଲେ ବରଣ ।
ପଣ୍ଡରପୁରରେ ଗଲା    ଦ୍ୱାଦଶ ବରଷ,
ଦେଶରେ ବ୍ୟାପିଲା ଯେବେ    ଯବନ ଧଡ଼ଧ,
ବିଜୟନଗରେ ଯାଇଁ    ରଚିଲେ ଆସ୍ଥାନ,
କୃଷ୍ଣଦେବ ଶ୍ରୀନିବାସେ    ଚିହ୍ନିଲେ ବନ୍ଦନ ।
ରାଜରତ୍ନ ବ୍ୟବସାୟୀ    ସଙ୍ଗେ କାରବାର
ରାଜାଙ୍କର ଥିଲା ଚିର,    କରିଲେ ଆଦର ।
ସ୍ୱାମୀବ୍ୟାସରାୟ-ରାଜ-    ଗୁରୁ ଶ୍ରେଷ୍ଠ ଯତି,
ତାଙ୍କ ପଦେ ଶ୍ରୀନିବାସ    ବଢ଼ାଏ ଭକତି ।
ଦୀକ୍ଷା ନେଇ ବେଦ ସ୍ମୃତି    କରି ଅଧ୍ୟୟନ,
ପୁରନ୍ଦରଦାସ ନାମ    କରିଲେ ଧାରଣ ।
ଦିନୁ ଦିନ ଗାଢ଼ତର    ହୃଦ୍ୟରେ ଭକତି,
ହେଲେ ଶିଷ୍ୟ ପରିତୃପ୍ତ    ଗୁରୁ ମହାଯତି ।
ଭିକ୍ଷାନ୍ନେ ବଞ୍ଚିଲେ ପ୍ରେମେ    ଭକ୍ତ ପରିବାର,
ବିଷ୍ଣୁପୂଜା ଅଭ୍ୟାଗତେ    କରିଣ ସତ୍କାର ।

ପତ୍ନୀ ପତି-ପୁତ୍ରେ ଶେଷେ ପରଷଇ ଅନ୍ନ,
ବଳଲେ ପ୍ରସାଦ ନିଜେ କରଇ ଗ୍ରହଣ ।
ତହିଁରୁ ବଳଲେ ଜଳେ ଦିଏ ସେ ଭସାଇ,
ତୁଙ୍ଗଭଦ୍ରା ନଦୀ ଜଳ- ଚର ଜୀବ ପାଇଁ ।
କାଳକ ସଞ୍ଚିରଖିବା ଲକ୍ଷ୍ମୀବାଞ୍ଛା ନାହିଁ
ନୁଏ ନାହିଁ, ଅଭାବେ ସେ ରହଇ ଉଷତେ ।
ଦକ୍ଷିଣ ଦେଶେ କହନ୍ତି ଲୋକେ ବ୍ୟଙ୍ଗକର,
ଦରିଦ୍ର ଘରକୁ ପୁର- ନ୍ଦର ଘର ସର ।
ପୁରନ୍ଦର ଆଶୁ କବି ଗୁରୁକୃପା ପାଇ,
ରଚିଗଲେ ପୌଚନେ ପାଞ୍ଚ ଲକ୍ଷ ଶ୍ଳୋକ ସେହି ।
ଜ୍ଞାନ, ବୈରାଗ୍ୟ ପ୍ରଚୁର ଧନ୍ୟ କଲେ ଦେଶେ,
ବଇକୁଣ୍ଠେ ପତି ପତ୍ନୀ ଗଲେ ଅବଶେଷେ ।

---

# ସୁନା କ'ଣ ମାଟି ନୁହେ !

ପଣ୍ଡରପୁରରେ ଏକ ଋଗ୍‌ବେଦୀ ବ୍ରାହ୍ମଣ,
ଘର କରି ଥାଏ ଲକ୍ଷ୍ମୀ- ଦତ୍ତ ତାର ନାମ ।
ସନ୍ଥଜନେ ସେବାକରେ ପରମ ଆଦରେ,
ସନ୍ଥ ରୂପେ ନାରାୟଣ ବିଜେ ହୋଇ ଘରେ ।
ସନ୍ତୋଷେ କହିଲେ, "ତୋର ହେବ ପୁତ୍ରଲଭ,
ସେପରି ବିଷ୍ଣୁଭକତ ଜଗତେ ଦୁଲଭ ।"
ଶୁଭ ଲଗ୍ନେ ବ୍ରାହ୍ମଣର ପୁତ୍ର ହେଲା ଜାତ,
ପୁତ୍ର ନାମ ରଙ୍କନିଧି ରଖିଲା ଭକତ ।

ଲୋକମୁଖେ ରଙ୍କା ବୋଲି ଡାକ ନାମ ହେଲା,
ରୂପେ ଗୁଣେ ସେହି ଶିଶୁ ଜଗତ ମୋହିଲା ।
ହରିଦେବ ବ୍ରାହ୍ମଣର କନ୍ୟା ଭକ୍ତିମତୀ,
ବିବାହ ବୟସେ ତାର ଉପଯୁକ୍ତ ପତି
ରଙ୍କା ସଙ୍ଗ ହୁଏ ବିଭା; ବୈରାଗ୍ୟ ପ୍ରଖର,
ବିଭାସି ଉଠିଲା, ହେଲା ବଙ୍କା ନାମ ତାର ।
ରଙ୍କ ଘରେ ରଙ୍କା ଜାତ, ନାହିଁ ହାତେ ଧନ,
ସେଥିପାଇଁ ପତି ପତ୍ନୀ ନିୟତ ପ୍ରସନ୍ନ ।
କାଙ୍ଗାଳର ହରି ପଦେ ଥାଏ ସଦା ରତି;
ଅର୍ଥ ଅନର୍ଥର ହେତୁ, ବୁଝନ୍ତି ଦମ୍ପତି ।
ପ୍ରେମ-ପଥେ ସୃଜେ ଅର୍ଥ ଘୋର ଅନ୍ତରାୟ,
ସେଥିପାଇଁ ଭକତର ଦୈନ୍ୟ ହିଁ ଆଶ୍ରୟ ।
ଜଡ଼ ଧନଠାରୁ ଦୂରେ ରହନ୍ତି ଦମ୍ପତି,
ପ୍ରଭୁଙ୍କ ସେବା ସ୍ମରଣ ମଣନ୍ତି ସମ୍ପତ୍ତି ।
ପ୍ରତିନିତ୍ୟ ପତି ପତ୍ନୀ ଯାଆନ୍ତି ଜଙ୍ଗଲେ,
ଶୁଷ୍କକାଷ୍ଠ ବନୁଁ ଆଣି ବିକନ୍ତି ବଜାରେ ।
ସେଥିରେ ଉଭୟ ପ୍ରାଣୀ ଯାଆନ୍ତି ତ ଚଳି,
ପ୍ରସାଦ ପାଆନ୍ତି ସୁଖେ, ବିଭୁ ପୂଜା କରି ।
ଭୋଗ ଇଚ୍ଛା, ସୁଖ ସ୍ପୃହା ନ ଆସଇ ମନେ,
ନାମେ ରତି, ଜୀବେ ପ୍ରୀତି ବଢ଼େ ଦିନୁଁ ଦିନେ ।
ଘୋର ଦାରିଦ୍ର୍ୟର ମଧ୍ୟେ ରଙ୍କା ବଙ୍କା ଥାଇ,
ଭକତିରେ ମଗ୍ନ ସଦା, ବିଭୁ ଭାବେ ବାଇ ।
ଅନ୍ୟ ଶ୍ରମାର୍ଜିତ ଧନ ନ କରି ଗ୍ରହଣ,
କାଠବିକା ସ୍ୱଳ୍ପ ଧନେ କାଟନ୍ତି ସେ ଦିନ ।

ଏହି ଘୋର ଦୈନ୍ୟ ଦେଖି ନାମଦେବ ଦୁଃଖେ,
ଜଣାଇଲେ ଯନ୍ତଶ୍ରେଷ୍ଠ ବିଠଲ ସମ୍ମୁଖେ ।
ଭଗବାନ—ନାମଦେବ ! ରଙ୍କା ମୋର ହୃଦୟ ଦୋସର,
ଇଚ୍ଛାକଲେ ଖୋଲିଦେବ କୁବେରଭଣ୍ଡାର ।
ଅର୍ଥର ଅନର୍ଥ ଗୁଣେ ଡରି ରହେ ଦୂରେ,
ଧନ ବାଞ୍ଛା ତିଳେ ମାସ ନାହିଁ ତା ଅନ୍ତରେ ।
ଦେଲେ ତ ରଖିବ ନାହିଁ ଅଟଳ ତା ପଣ,
କାଲି ବନେ ଯାଅ, ତାର ପାଇବୁ ପ୍ରମାଣ ।
ବନପଥେ ଲୁଚି କରି ଦେଖ ସମାଚାର,
ଅଦ୍ଭୁତ ଭକତ-ଲୀଳା, ଅଦ୍ଭୁତ ବିଚାର ।
ଭକତ ପରୀକ୍ଷା ପାଇଁ ଲୀଳାମୟ ହରି
ସୁନା ମୋହରରେ ପୂର୍ତ୍ତି ରଚି ଏକ ଥଳୀ ।
ଫିଙ୍ଗିଦେଲେ ବନପଥେ କେତେକ ତହିଁରୁ,
ବାହାରି ମୋହର ସ୍ପଷ୍ଟ ଦିଶୁଥିଲା ଦୂରୁ ।
ବୃକ୍ଷ ଅନ୍ତରାଳେ ଲୁଚି ଦେଖୁଥିଲେ ହରି,
ଭକତପ୍ରଧାନ ନାମ- ଦେବେ ସଙ୍ଗେ ଧରି ।
ପ୍ରତିଦିନ ପରି ରଙ୍କା ଜପି ବିଭୁ ନାମ,
ଆସେ ପଥେ ମହାଭାବେ ତନ୍ମୟ ପରାଣ ।
ସୁନା-ମୋହର-ଥଳୀରେ ଗଲେ ସେ ହାଟବାଡ଼ି,
ପତ୍ନୀ ବଙ୍କା କିଛି ଦୂରେ ପଛେ ଥିଲେ ପଡ଼ି ।
ନାହିଁ ମୋହ ମାୟା ମନେ ଭକ୍ତ ଗଲେ ଚାଲି,
କିସ ଭାବି ମନେ ପୁଣି ଆସିଲେ ସେ ଫେରି ।
ବାଟରୁ ଗୋଟାଇ ଧୂଳି ଢାଳନ୍ତି ଥଳୀରେ,
ପୋତି ହୋଇଗଲା ଥଳୀ, ଅଦୃଶ୍ୟ ଧୂଳିରେ ।

ଏହି ଘୋର ଦୈନ୍ୟ ଦେଖି ନାମଦେବ ଦୁଃଖେ,
ଜଣାଇଲେ ଯନ୍ତଶ୍ରେଷ୍ଠ ହରି ସମ୍ମୁଖେ ।
ଭଗବାନ—ନାମଦେବ ! ରଙ୍କା ମୋର ହୃଦୟ ହୋସର,
ଇଚ୍ଛାକଲେ ଖୋଲଦେବ କୁବେରଭଣ୍ଡାର ।
ଅର୍ଥର ଅନର୍ଥ ଗୁଣେ ଡରି ରହେ ଦୂରେ,
ଧନ ବାଞ୍ଛା ତିଳେ ମାତ୍ର ନାହିଁ ତା ଅନ୍ତରେ ।
ଦେଲେ ତ ରଖିବ ନାହିଁ ଅଟଳ ତା ପଣ,
କାଲି ବନେ ଯାଅ, ତାର ପାଇବ ପ୍ରମାଣ ।
ବନପଥେ ଲୁଚି କରି ଦେଖ ସମାଚାର,
ଅଦ୍ଭୁତ ଭକତ-ଲୀଳା, ଅଦ୍ଭୁତ ବିଚାର ।
ଭକତ ପରୀକ୍ଷା ପାଇଁ ଲୀଳାମୟ ହରି
ସୁନା ମୋହରରେ ପୂର୍ଣ୍ଣ ରଚି ଏକ ଥଳୀ ।
ଫିଙ୍ଗିଦେଲେ ବନପଥେ କେତେକ ତହିଁରୁ,
ବାହାରି ମୋହର ସ୍ପଷ୍ଟ ଦିଶୁଥିଲା ଦୂରୁ ।
ବୃକ୍ଷ ଅନ୍ତରାଳେ ଲୁଚି ଦେଖୁଥିଲେ ହରି,
ଭକତପ୍ରଧାନ ନାମ- ଦେବେ ସଙ୍ଗେ ଧରି ।
ପ୍ରତିଦିନ ପରି ରଙ୍କା ଜପି ହରି ନାମ,
ଆସେ ପଥେ ମହାଭାବେ ତନ୍ମୟ ପରାଣ ।
ସୁନା-ମୋହର-ଥଳୀରେ ଗଲେ ସେ ହାବୋଡ଼ି,
ପତ୍ନୀ ବଙ୍କା କିଛି ଦୂରେ ପଛେ ଥିଲେ ପଡ଼ି ।
ନାହିଁ ମୋହ ମାୟା ମନେ ଭକ୍ତ ଗଲେ ଚଳି,
କିସ ଭାବି ମନେ ପୁଣି ଆସିଲେ ସେ ଫେରି ।
ବାଟରୁ ଗୋଟାଇ ଧୂଳି ଢାଳନ୍ତି ଥଳୀରେ,
ପୋତି ହୋଇଗଲା ଥଳୀ, ଅଦୃଶ୍ୟ ଧୂଳିରେ ।

ଏ ମଧ୍ୟରେ ପତ୍ନୀ ଆସି    ମିଳିଗଲେ ପାଶେ,
ପତିଙ୍କୁ ପୁଛନ୍ତି ବଙ୍କା    ଧୀରେ ଦରହାସେ ।
"କିସ ଘୋଡୁଥିଲ ନାଥ !    ମଳାଇଣ ଧୂଳି",
କିସ କହିବେ ବା ରଙ୍କା,    ନ ପାରନ୍ତି ଖୋଲି ।
ପୁଣି ପଚାରନ୍ତି ସତୀ,    "ନାଥ ! କି ଘୋଡ଼ାଅ ?
ପଚାରୁଛି ପ୍ରଶ୍ନ, କିପାଁ    ଉତ୍ତର ନ ଦିଅ ?"
ଗମ୍ଭୀରେ କହନ୍ତି ପତି,    "ମୋହରର ଥଳୀ,
ପଡ଼ିଥିଲା ପଥେ ତହିଁ    ଢାଙ୍କୁଥିଲି ଧୂଳି ।
କାଳେ ସୁନା ଦେଖି ତୁମ    ମନେ ଲୋଭ ହେବ,
ଧନ ଲୋଭ ଲେଶ ଥିଲେ    ବିଭୁ କିଏ ଦେବ ?"
ହସିଣ ଦିଅନ୍ତି ସତୀ    ପତିରେ ଉତ୍ତର,
"ସୁନା କ'ଣ ମାଟି ନୁହେ,    ତୁମର ବିଚାର ?
ମାଟିକୁ ମାଟିରେ ତେବେ    ନାଥ କାହିଁପାଇଁ,
ଢାଙ୍କୁଅଛ ବୃଥା, ଶ୍ରମ    ସିନା ସାର ହୋଇ !"
ପତ୍ନୀର ବଚନେ ରଙ୍କା    ଅତି ହିଁ ପ୍ରସନ୍ନ,
କହିଲେ, "ଧନ୍ୟ ବୈରାଗ୍ୟ !    ଧନ୍ୟ ତୋ ଜୀବନ !
ମୋ ବୁଦ୍ଧିରେ ସୁନା, ମାଟି-    ଠାରୁ ଭିନ୍ନ ଦିଶେ,
ମୋଠାରୁ ତୋ ପ୍ରାଣ ବଡ଼    ଉଦାସେ, ସନ୍ନ୍ୟାସେ ।"
  ଅଲୌକିକ ନାମଦେବ    କରି ଦରଶନ,
ପ୍ରଭୁରେ ଭାଷନ୍ତି, ମୃଦୁ    ମଧୁର ବଚନ ।
"ତୋର କୃପାଦୃଷ୍ଟି ପ୍ରଭୁ !    ପଡ଼େ ଯା ଉପରେ,
ତ୍ରିଭୁବନ ସୁଖ ସେହୁ    ହେଲେ ପଦେ ଦଳେ ।
ଅମୃତ ଆସ୍ୱାଦ ଯାର    ପାଇଛି ରସନା,
ଗୁଡ଼-ପାଣି ତା ପାଖେ କି    ପାସଙ୍ଗରେ ଘେନା !

ଧନ୍ୟ ରଙ୍କା, ବଙ୍କା ! ଧନ୍ୟ ଭକତ-ଦମ୍ପତି !
ଏ ବୈରାଗ୍ୟ ଧରଣୀର ଅତୁଲ୍ୟ ବିଭୂତି !
ଚନ୍ତି ବନମଧ୍ୟେ ଘୂରି ଭକତଯୁଗଳ,
ନ ଦେଖନ୍ତି କାହିଁ ବନେ ଖଣ୍ଡେ ହେଲେ ଜାଳ ।
ଆଗରୁ ଯାଇଣ କେହୁ ଗୋଟାଇ ଯୋଟାଇ,
ବିଡ଼ା ବାନ୍ଧି ସ୍ଥାନେ ସ୍ଥାନେ ଦେଇଥିଲା ଥୋଇ ।
ଅନ୍ୟର ସଞ୍ଚିତ କାଠ ନେବେ ସେ କପରି ?
ଶୂନ୍ୟ ହାତେ ବଣରୁ ସେ ଆସୁଛନ୍ତି ଫେରି ।
ରଙ୍କା—ଆଜ କ ଯୋଗକୁ ପ୍ରିୟେ ! ସୁନା ଦରଶନ,
ଫଳ ଯାଙ୍ଗେ ଯାଙ୍ଗେ ହେଲା, ଖାଡ଼ା ଅନଶନ ।
ଛୁଇଁଥିଲେ କିବା ଦୁଃଖ ହୋଇଥାନ୍ତା ଭୋଗ !
ପ୍ରଭୁଙ୍କ କରୁଣା ଘଟି ନାହିଁ ସେ ଦୁର୍ଯୋଗ ।
ଭକତଯୁଗଳ ନିଷ୍ଠା ଦେଖି ନାରାୟଣ,
ପ୍ରକଟ ହୋଇଣ ଆଗେ କଲେ ଆଲିଙ୍ଗନ ।
ଭକତ ଦମ୍ପତି ପ୍ରେମେ ଢାଳି ଅଶ୍ରୁଜଳ,
ଧୋଇଲେ ଭକ୍ତିରେ ପ୍ରଭୁ. ଚରଣ କମଳ ।
ପ୍ରଭୁ ହେଲେ ଅନ୍ତର୍ହିତ ଝରହରେ ଜଳ,
ମୁହୁର୍ମୁହୁ ମୂର୍ଚ୍ଛା ହୁଏ, ନ ପାରନ୍ତି ଚଳି ।
ସେହି ଦୈନ୍ୟ ଧରି ସୁଖେ ରଚଣ ସନ୍ନ୍ୟାସ,
ସେହି ଭଳ କାଠ ବିକ ପିଇ ବିଭୁରସ ।
ଶହେ ଏକ ବର୍ଷ ରଙ୍କା ଥିଲେ ଧରଣୀରେ,
ସସ୍ତ୍ରୀକ ଚଳିଲେ ଶେଷେ ବଇକୁଣ୍ଠ ପୁରେ ।

— – —

# ମୋହନ ମରଣ

ଜମିଦାର ମେଘସିଂହ ସୁତ-ସନମାନେ,
ଉଦାର ମହତ ପ୍ରାଣେ ଦେଖନ ପ୍ରଜାଗଣେ ।
ଜୀବନ ମରଣ ସମ ହୁଅଇ ପ୍ରତୀତ,
ବିଷ୍ଣୁବିଧାନେ ମଙ୍ଗଳ ଦେଖନ୍ତି ନିରତ ।
ସୁଖଁ ଦୁଃଖ ଭିନ୍ନ କେବେ ନ ହୁଏ ବିଶ୍ୱାସ,
ବିଷ୍ଣୁରେ ନିର୍ଭର, ସେହି ଚରଣରେ ଆଶ ।
ଶ୍ୱାସକ୍ରିୟା ପରି ନିତ୍ୟ ଶ୍ରୀହରି ସ୍ମରଣ,
ଶେଷ ଯାମୁଁ ଶଯ୍ୟାତ୍ୟାଗ ସାଧନ ଭଜନ ।
ପ୍ରାତଃସ୍ନାନ, ସନ୍ଧ୍ୟା, ଜପ, ପୂଜା, ଉପାସନା,
ଗୀତାପାଠ ପରେ ନିତି ଭାଗବତ ଗୁଣା ।
କଲ ପରି ପୂଜାପାଠ ଚଳୁଥାଏ ନିତି,
ନିତ୍ୟକର୍ମେ ଯାଏ ସୁଖେ ଦିପହର ବିତି ।
ମଧ୍ୟାହ୍ନେ ଅତିଥିସେବା, ଦରିଦ୍ର-ଭୋଜନ
ଆଖିରେ ଦେଖନ୍ତି, ପରେ ପ୍ରସାଦ ଗ୍ରହଣ ।
ଦିନାର୍ଦ୍ଧ କାଟିଣ ନିତ ଯାଆନ୍ତି କଚେରୀ,
ବୁଝନ୍ତି ସକଳ କାମ ଧୀର ବୁଦ୍ଧି ଧରି ।
ପ୍ରଜାଙ୍କର କଳିଗୋଳ ମାଲି ମକଦ୍ଦମା,
ଶ୍ରୀହରି ସ୍ମରଣି ସଙ୍ଗେ ହୁଏ ବୁଝାମଣା ।
ରାଇଜେ ମଙ୍ଗଳ ଖେଳେ, ତୃପ୍ତ ପ୍ରଜାଗଣ,
ପ୍ରଜା ତୃପତିରେ ତୃପ୍ତ ମେଘସିଂହ ମନ ।
ବିଭିନ୍ନ ପ୍ରକୃତି ଘେନ ଜନମେ ମନୁଷ୍ୟ,
ପ୍ରକୃତି କରୁଛି କାମ, ଆତ୍ମାର କି ଦୋଷ ?

ସଂସର୍ଗ, ପ୍ରକୃତି ଦୋଷେ    ହୁଡ଼େ ଲୋକ ପଥ,
ଭଲ ମନ୍ଦ ବୁଝିବାକୁ    ନୁହେ ସମରଥ ।
ମେଘସିଂହ ଧର୍ମପ୍ରାଣ,    ନିଷ୍ପାପ, ଉଦାର,
ଶୁଭ୍ର ଯଶେ ଈର୍ଷୀ ପୁଣି    ଦୋଷ ବାଛେ ତାର
ମୈରୁଦାନ, ଗୃରଣ ସେ    ବିଶ୍ୱସ୍ତ ଗୃକର,
ଅଙ୍ଗଲଗା ଭୃତ୍ୟ ତାରେ    ପ୍ରଭୁର ନିର୍ଭର ।
ପ୍ରଭୁର ବିମଳ ଯଶେ    ଈର୍ଷା ହୁଏ ଜାତ,
ଦେଖୁ ଦେଖୁ ଗୃରଣର    ହିଂସା ବିପରୀତ ।
କ୍ରମେ ବିଗିଡ଼ିଲା ମନ,    ବୁଦ୍ଧି ଭ୍ରଷ୍ଟ ହେଲା,
କଞ୍ଚା ମାଉଁସରେ ପୋକ    ପକାଇ ବସିଲା ।
ଗ୍ରବେ, ମେଘ ସିଂହ ଭ୍ରଷ୍ଟ,    ରାଜ୍ୟ କରେ ନାଶ,
ସ୍ଥିର କଲା, ଗୁପତେ ସେ    ସାଧିବ ବିନାଶ ।
ଦେହଲଗା ଗୃକର ସେ,    ଅଛି କଷ୍ଟ କିବା ?
ତାହାର ହାତରେ ପ୍ରଭୁ    ମରିବା ବଞ୍ଚିବା ।
ଦିନେ କୃଷ୍ଣପକ୍ଷ ରାତି    ପ୍ରଥମ ପ୍ରହର,
ବାହାରେ ଘୋଟିଛି ଘନ    କୃଷ୍ଣ ଅନ୍ଧକାର ।
ଗୃରଣ ସଙ୍ଗତେ ଗତ    କରନ୍ତି ରାଜନ,
ଯିବେ ଇଚ୍ଛା କିଛି ଦୂରେ    ରାଣୀ ବାସସ୍ଥାନ ।
ଗୃରଣ ହସ୍ତରେ ଥିଲା    ଭୀଷଣ କଟାର,
ପାପବୁଦ୍ଧିରେ ପାମର    କରଇ ବାହାର ।
ପ୍ରଥମେ କମ୍ପଇ ହାତ,    ବିବେକ ଧିକ୍କାରେ;
ନ ଶୁଣେ ବିବେକ-ବାଣୀ    ଚଳାଏ କଟାରେ ।
ସାଧୁ ସ୍ୱାମୀ ବଧିବାକୁ    ପାପୀ ମନ ଯାଏ,
ବିଭୁଙ୍କ କରୁଣା-ଲୀଳା    ଅନ୍ୟଥା ଘଟାଏ ।

ଦଉଡ଼ିଆସିଲ୍ ଘଣ୍ଟୁ ଗଲ୍ ମଧେ ପଶି,
ଗୁରଣ ବକ୍ଷରେ ଗୁଣ୍ଡେ ହେଲ୍ ଶିଙ୍ଗ ଭୂଷି ।
ନେସ ଆଘାତେ ପଡ଼େ ଦୁଷ୍ଟ ଭୂତଳେ ଓଲଟି,
କୁଠାର ଧରଣ ହିଏ ନାସା ଅଗ୍ର କାଟି ।
ପ୍ରବଳ ଧାରାରେ ରକ୍ତ ବହେ ଅନିବାର,
ପଡ଼ ମୂର୍ଚ୍ଛା ଯାଏ ପାପୀ, ଗୁଡ଼ଣ ଚିତ୍କାର ।
ମେଘସିଂହ ଚେଉଠିଲେ ଶୁଣିଲେ ଚିତ୍କାର,
ଦେଖନ୍ତ ମୈରୁଦାନର ବେହୋସ ଶରୀର ।
ବକ୍ଷରେ ଶିଂଘ ଆଘାତେ, ନାସାଗ୍ର ଛେଦନେ,
ଗୁରୁକଷ୍ଟ ହୁଏ, ପଡ଼- ଅଛୁ ଅଚେତନେ ।
ଜମିଲେ କ୍ଷଣକେ ମେଘ- ସିଂହଙ୍କ ଚିତ୍କାରେ,
ରାଣୀମହଲରୁ ଭୃତ୍ୟ, ଧାଇଁ, ଅନୁଚରେ ।
ଉଠାଇଣ ଗୁରଣକୁ ନେଲେ ଶୀଘ୍ର ବନ୍ଧି,
ଥୋଇଲେ ରାଣୀମହଲେ ଛୁଞ୍ଚା ବଞ୍ଚା ହୋଇ ।
ଜଳିଲ୍ ଆଲୋକ ଆସି, ଦେଖନ୍ତ ପରଖି,
ଖର ଶାଣ ରକ୍ତଲିପ୍ତ କଟାର ନିରେଖି
ମୂର୍ଚ୍ଛିତେ, ସରବେ ମହା- ବିସ୍ମୟେ ମଗନ,
ମେଘ ସିଂହ ଗୁହାଁଛନ୍ତି, ନୀରବ, ବିଷନ୍ନ ।
ମୈରୁଦାନ କଲ୍ କପଁ । କଟାର ବାହାର,
କଟିଲ୍ ସେଥିରେ କେହେ ନାସିକା ତାହାର ।
ସେ ତ ଅନୁଗତ ଭୃତ୍ୟ, ନାହିଁ ଅବିଶ୍ୱାସ,
ସେ ରହସ୍ୟ ବୁଝିବାକୁ ନ ହେଲ୍ ପ୍ରୟାସ ।
ମେଘ ସିଂହ ସଙ୍ଗେ ଆସି ଯୋଗଦେଲେ ରାଣୀ,
ଘାଉରେ ମଲମ ଦେଲେ, ଶିରେ ଦେଲେ ପାଣି ।

ରାଜା ବସି ପାଶେ ଜନେ ଛୁଆଁ ବାଆଁ କଲେ,
ମୁଷ୍ଟି ଖୋଲି ଅନୁଚରେ କଟାର କାଢ଼ିଲେ ।
ନାକ ତଳେ ପ୍ରଲେପ ଦେଲେ, ସକଳ ଯତନ
କରାଗଲା, ମୈରୁଦାନ ନ ଖୋଲେ ନୟନ ।
ଅନ୍ତରେ ଆସେ ଚେତନା, ଛୁରିର ଆଘାତ,
ଦଅଇ ଭୀଷଣ ପୀଡ଼ା, ନୟନ ମୁଦ୍ରିତ ।
ରାଣୀ—ଶୂରଣର ବକ୍ଷସ୍ଥଳେ ତେଣୁ ଶୃଙ୍ଗାଘାତ,
ଗୁରୁପୀଡ଼ା ହେବା କଥା ନୁହଇ ବଚନ ।
କଟାର ଖୋଲିଣ ଧରି- ଥିଲି କାହାପାଇଁ ?
ଆପଣଙ୍କୁ ମାରିବାର କଳ୍ପନା ତ ନାହିଁ !
ଅନ୍ଧକାରେ ମୈରୁଦାନ କଟାର ବାହାର
କଲାବେଳେ ପଡ଼ିଥିଲା ଦୃଷ୍ଟି ରାଜାଙ୍କର ।
କିନ୍ତୁ ସେ ପ୍ରାଣେ ନଥିଲା ଅବିଶ୍ୱାସ ଲେଶ,
ଭାବିଲେ, "ମୋ ରକ୍ଷା ପାଇଁ ଭୃତ୍ୟର ପ୍ରୟାସ ।"
ରାଣୀଙ୍କ ପ୍ରଶ୍ନରେ ଆସେ ସନ୍ଦେହ ନୂତନ,
ବିଶ୍ୱାସୀ ହୃଦେ ନ ପାଏ ବହୁକ୍ଷଣ ସ୍ଥାନ ।
ରାଜା—କି ଭାବୁଛ ରାଣୀ ! ତୁମେ ହେଲ କି ପାଗଳୀ ?
ବିଶ୍ୱାସୀ ଶୂରଣେ ଭାବ ଘାତୁକ ମୋହର !
ଏପରି ସନ୍ଦେହ, ପାପ ବୋଲି ହୁଏ ମନେ,
କଟାର ସେ ଖୋଲିଥିବ ମୋର ସୁରକ୍ଷଣେ ।
ରାଣୀ—ନୁହେ ବେଶି ରାତି, ଏ ତ ପ୍ରଥମ ପ୍ରହର,
ନାହିଁ ଜୀବଜନ୍ତୁ ଗୋଳ, ନୁହେ ତ ଜଙ୍ଗଲ,
ରକ୍ଷାର ଆବଶ୍ୟକତା କିବା ଏଠି ଥିଲା ?
ନିଶ୍ଚୟ ଶୂରଣ ମନେ ପାପବୁଦ୍ଧି ହେଲା ।

ପାପ ବୁଦ୍ଧିରେ ଘରଣ    ଖୋଳିଲ୍ କଠାର,
ବିଭୁକୃପା ବଳେ ତୁମ୍ଭଁ    ପାଇଲେ ଉଦ୍ଧାର ।
ରାଜା—ଛି ! ଏସବୁ ପାପ କଥା,    ବନ୍ଦ କର ରାଣୀ,
ସନ୍ଦେହ, କି ଅବିଶ୍ୱାସ    ମହାପାପେ ଗଣି ।
ବିଭୁଙ୍କ ବିଧାନେ ସୁଖ    ଦୁଃଖ ଭୋଗେ ଜନ,
ସର୍ବତ୍ର ମଙ୍ଗଳ ଦେଖି,    ନରେ ନାରାୟଣ ।
ପରମ ବିଶ୍ୱାସୀ ଭକ୍ତ    ମୋର ମୈତ୍ରଦାନ,
ତାହାର ଏ ବୁଦ୍ଧି ହେବ,    ନୁହେ ଅନୁମାନ ।
ପାଞ୍ଚି ନାହିଁ ମନେ ମୁଁ ତ    ଅନିଷ୍ଟ କାହାର,
ଯେବେ କିଛି ଦୋଷ ଥାଏ    ଅନ୍ତରେ ତାହାର,
ଫଳେ ଦଣ୍ଡ ମୋତେ ବିଭୁ !    ହେଉ ସେ ମୁକତ
ତାର ପାପୁଁ, କର ତାରେ    ନିରୋଗ, ନିଶ୍ଚିନ୍ତ ।
କହୁଁ କହୁଁ ମେଘ ସିଂହ    ନେତ୍ରୁଁ ଝରେ ନୀର,
ଘରଣର କଷ୍ଟ ଭାଳି    ଅତି ହିଁ କାତର ।
ଅଶ୍ରୁଧାର ଦେଖି ରାଣୀ    ପତିଙ୍କ ନୟନେ,
ଦ୍ରବିଲ୍ ପରାଣ, ଭୁଲି-    ଗଲେ ସବୁ କ୍ଷଣେ ।
ରଚିଲେ ପ୍ରାର୍ଥନା ସେହୁ    ପତି ପନ୍ଥା ଧରି,
ରାଣୀ—ଯେ ପାପ କରିଛି ଭୃତ୍ୟ    ଅବିଶ୍ୱାସ କରି,
ମାଗେ ତାର କ୍ଷମା, କ୍ଷମ    ଦୟାମୟ ପ୍ରଭୁ !
ତୁମ ଦୟାବଳେ ଭୃତ୍ୟ    ପୂର୍ବସ୍ୱାସ୍ଥ୍ୟ ଲଭୁ ।
ମୈତ୍ରଦାନର ଅନ୍ତରେ    ଆସିଥିଲ୍ ଜ୍ଞାନ,
ଶୁଣେ ରାଜା-ରାଣୀଙ୍କର    କଥୋପକଥନ ।
ଘୋର ଅନୁତାପେ ହୃଦ    ହୋଇଲ୍ ବ୍ୟାକୁଳ,
ଅନ୍ତରରୁ କୋହ ଉଠେ,    ବହେ ଅଶ୍ରୁଜଳ ।

ରାଜା-ରାଣୀଙ୍କର କ୍ଷମା, ବ୍ୟାକୁଳ ପ୍ରାର୍ଥନା
ବନ୍ଧୁହାତରେ, ନିବାରିଲା ସକଳ ବେଦନା,
ବର୍ଷର ଆଘାତ, ଆଉ ନାସାକ୍ଷତ ଜ୍ୱାଳା,
କେଉଁ ଇନ୍ଦ୍ରଜାଲ ବଳେ କ୍ଷଣେ ଉଭାଇଲା ।
ରାଜା ରାଣୀ ସମାଧିସ୍ଥ, ଭାବେ ନିମଗନ,
ଆକୁଳେ ସୁରଣ ଧରେ ଦୁହିଁଙ୍କ ଚରଣ ।
ଶିଶୁ ପରି କାନ୍ଦେ ଉଚ୍ଚେ, ଗଡ଼ଇ ଭୂତଳେ,
ଅନୁତାପ-ଅଶ୍ରୁ ଢାଳି ଚରଣ ପଖାଳେ ।
ଭାଙ୍ଗେ ଧ୍ୟାନ, ମେଘ ସିନ୍ଧୁ ଫିଟାନ୍ତି ଲୋଚନ,
ଭୂତଳୁ ତୋଳିଣ ଭୃତ୍ୟେ କଲେ ଆଲିଙ୍ଗନ ।
ସୁରଣ—ଛାଡ଼ନ୍ତୁ, ଛାଡ଼ନ୍ତୁ ପ୍ରଭୁ ! ନ ଛୁଅଁନ୍ତୁ ମୋରେ,
ଏପରି ପାଷଣ୍ଡ, ପାପୀ କେ ଅଛି ମହୀରେ ?
ନରକର କୀଟ, ଧରି ସନ୍ଦେହ ମନରେ,
ଦୋଷୀ ମଣି ମହାତ୍ମାଙ୍କୁ ମାରିବ ବଗୁରେ !
ନିରପରାଧର ରକ୍ଷା ଲାଗି ଭଗବାନ,
ଷଣ୍ଢ ରୂପେ ମଧେ ଆସି ହେଲେ ବିଦ୍ୟମାନ ।
ସେତିକ ତ ନୁହେ, ପ୍ରଭୁ ନାସିକା ଛେଦନ,
କରିଣ ଉଚିତ ଶିକ୍ଷା କଲେକ ପ୍ରଦାନ ।
ମହାପାପ ତରୁମୂଳେ କୁଠାର ଆଘାତ,
କରି ଉଦ୍ଧାରିଲେ ମୋତେ, ଲୁଚିଲା ଦୁଷ୍କୃତ ।
ସବୁ ହେଲା ଆପଣଙ୍କ କ୍ଷମା-ପ୍ରୀତି ବଳେ,
ପାମରର ସ୍ଥାନ କାହିଁ ଆଉ ଭୂମଣ୍ଡଳେ ?
ଅନ୍ତରେ ଅନଳ ଜଳେ, ଅସହ୍ୟ ଅଶାନ୍ତ,
ବହିଣ ଉଚିତ ଦଣ୍ଡ ଦିଅନ୍ତୁ ନୃପତି ।

ବେଙ୍ଗା—ଛାଡ଼ ଚନ୍ଦ୍ରା ମୈତ୍ରୀଦାନ !        ଆଜ ତୁ ତ ମୋର,
ପୂର୍ବଠାରୁ ବଳ ପ୍ରିୟ,        ଅଟୁ ଆପଣାର ।
ତୋର ଏହି ଆଚରଣ        ଦେଲ ହୃଦେ ଜାଳି,
ଅପାର ବନ୍ଧୁବିଶ୍ୱାସ,        ଚକ୍ଷୁ ଦେଲ ଖୋଲି ।
ଭାଳ ତୋର ଉପକାର,        ନିଜକୁ ମୁଁ ଋଣୀ
ମଣେ ତୋର ପାଶେ, ତୋର        ସକଳ କରଣୀ
ଭାବେ ବନ୍ଧୁ ଆଶୀର୍ବାଦ,        ନିମିତ୍ତ ତ ତୁହି,
ଯେହି ମଙ୍ଗଳବିଧାନେ        ତୋର ଦୋଷ କାହିଁ ?
ଯାହା ଯେନ ବଢ଼େ ପ୍ରୀତି,        ବନ୍ଧୁରେ ବିଶ୍ୱାସ,
ହେଉ ସେ ନିମିତ୍ତ ଘୃଣ୍ୟ,        ସେହି ତ ନମସ୍ୟ ।
ନମସ୍ୟ ତୁ ଦିଶୁ ମୋତେ,        ସୁନ୍ଦର, ମହତ,
ତୋହ ଯେନ ହେଲ ଆଜ        କି ଯେ ଉପକୃତ !
ଯଦି ତୁ ଉଚିତ ଦଣ୍ଡ        କରୁଛୁ ପ୍ରାର୍ଥନା,
ବହୁଛି ନିବିଧ ଚନ୍ତ୍ର,        ପୂରୁ ତୋ କାମନା ।
ପ୍ରାଣିପୀଡ଼ା ଛାଡ଼ ହୁଅ        ପ୍ରାଣି-ହିତେ ରତ,
ଏହି ଶାରୀରିକ ଦଣ୍ଡ        ସାଧୁ ତୋର ହିତ ।
ନ ଭାଷିବୁ କାରେ କେବେ        କଠୋର ବଚନ,
ହେଉ ସତ୍ୟ, ହିତକର,        ମଧୁର ମୋହନ,
ପରିମିତ ତୋର ବାଣୀ;        ବନ୍ଧୁ ନାମ ଗୁଣ,
କୀର୍ତ୍ତନ, ଗାୟନ ବଳେ        ସୁଖୀ କର ଜନ ।
ମନୁ କରି ଦୂର କ୍ରୋଧ,        ଦ୍ରୋହ, ଦମ୍ଭ, କାମ,
ଲୋଭ, ହିଂସା, ମଦ, ଈର୍ଷା,        ବିଷୟ-ଚିନ୍ତନ ,
ଭର ତହିଁ ସରଳତା,        ପ୍ରସନ୍ନତା, ପ୍ରେମ,
ସନ୍ତୋଷ, ଭଗବଚ୍ଚିନ୍ତା,        ନରେ ନାରାୟଣ-

ଜ୍ଞାନେ କର ତୁମ୍ଭେ ସେବା, ବନ୍ଧୁତୃପ୍ତି ପାଇଁ,
ବଚନ ମନର ଦଣ୍ଡ ଦେଉନ ତ୍ରୁଟି ତୁମ୍ଭେ ।
ଏ ତ୍ରିଦଣ୍ଡ ଧର ବାବୁ ! ତ୍ରିଦଣ୍ଡୀ ତୁ ହୁଅ,
ଏ ପ୍ରାଣେ ପରମାନନ୍ଦ, ସନ୍ତୋଷ ତୁ ଦିଅ ।

ରାଜା ବନ୍ଧୁ ଭାବେ ବୁଢ଼ା ଦେଲେ ଉପଦେଶ,
ଶ୍ରବଣ ପରଶେଁ ଗଲା ସକଳ କଳୁଷ ।
ସାଧୁ ଉପଦେଶ, ପୁଣି ସାଧୁସଙ୍ଗ ବଳେ,
ଧର୍ମ ପନ୍ଥା ଧରି, ଧନ୍ୟ ହେଲା ମହୀତଳେ ।

ମେଘ ସିଂହଙ୍କର ଥିଲା କୁମାର ରତନ,
ଗୁଣର ଭଣ୍ଡାର ସେହୁ, ନାମ ତା ସଜ୍ଜନ ।
ତା ସୌନ୍ଦର୍ଯ୍ୟ, ତା ସ୍ୱଭାବ ନିଏ ପ୍ରାଣ କିଣି,
ସଜ୍ଜନେ ଭାବନ୍ତି ଲୋକେ ସଜ୍ଜନରେ ମଣି ।
ତରୁଣ ବୟସ, ଷୋଳ ପାରି ନାହିଁ ପୂରି,
ସେହି ବର୍ଷ ବିବାହିତ ଅପୂର୍ବ ସୁନ୍ଦରୀ ।
ବିଧିଙ୍କ ବିଚିତ୍ର ଲୀଳା, ହେଲା ସେ ପତିତ
ଅଶ୍ୱପୃଷ୍ଠୁଁ ତଳେ, ଘଟେ ଶିରେ ଗୁରୁ କ୍ଷତ ।
ତଳେ ପଡ଼ି ରାଜସୂନୁ ଚେତନାବିହୀନ
ହେଲା ବହୁକ୍ଷଣ, ପରେ ଦେଖାଗଲା ଜ୍ଞାନ ।
ଚଳିଲା ଚିକିତ୍ସା ପୂରା, କ୍ଷତ ନ ଶୁଖିଲା,
ଘାଆ ବିଷ ଦେଖୁଁ ଦେଖୁଁ ସର୍ବାଙ୍ଗେ ଚରିଲା ।
ସକଳେ କରିଲେ ସ୍ଥିର, ନିଶ୍ଚିତ ମରଣ,
ଲୋକଙ୍କ ଭାବଭଙ୍ଗୀରୁ ଜାଣିଲା ସଜ୍ଜନ ।
କ୍ଷଣକେ ଦିଶିଲା ମୁଖ ମଳିନ, ଉଦାସ,
ସଜ୍ଜନ ସିଂହର ଗଲା ବଞ୍ଚିବାର ଆଶ ।

ପିତା ବସିଥିଲେ ପାଶେ     ବନ୍ଧୁ ନାମ ଗୁଣି
ପୁତ୍ର ମନ ଜାଣି ସ୍ନେହେ     ଭାଷନ୍ତି ସେ ବାଣୀ ।
ପିତା—ବାବା ସଜ୍ଜନ ! ତୋର ଏ     ସର୍ବଦା ସରସ
ହସ ହସ ମୁଖ କିପାଁ     ବିଷନ୍ନ, ବିରସ ?
ପୁତ୍ର ରୂପେ ମୋର ତୁହି     ସମ୍ପତ୍ତି ମାଲିକ,
ନୃପତିକୁମାର ବୋଲି     ତୋର ବଡ଼ ଠେକ ।
ଏସବୁ ବିଧାତା ଲୀଳା,     ମଙ୍ଗଳ ବିଧାନ;
ସେ ଲୀଳାରେ ଏବେ ତୁହି     ବନ୍ଧୁଙ୍କ ସନ୍ତାନ
ହେବାକୁ ବସିଛୁ; ହେବୁ     ସ୍ୱର୍ଗ ଅଧିକାରୀ,
ତୋର ଏ ପରମ ଲାଭ,     କଳ୍ପନା ତାଙ୍କର ।
ଏ ତ ସୁଖମୟ କଥା,     ଆନନ୍ଦ ଘଟନା,
ହସ ଫୁଟୁ ମୁଖେ ତୋର,     ନ ହୁଅ ବିମନା ।
ମଙ୍ଗଳମୟ ବନ୍ଧୁଙ୍କୁ     ମୋର ନମସ୍କାର,
ଜଣାଇ କହିବୁ, କେବେ     କରନ୍ତି ବିଚାର
ମେଘ ସିଂହେ ନେବାକୁ ସେ,     ଅନାମୟ ବାସେ,
ସିଦ୍ଧେ ଯହିଁ ନିବସନ୍ତି     ଅପୂର୍ବ ଉଲ୍ଲାସେ ।
ଉଚ୍ଛନ୍ନ ନୁହେ ଯିବାକୁ,     ଦାସ ଅନୁଦାସ
ଖଟୁଛୁ ତାଙ୍କର କାମେ,     ତାଙ୍କର ସନ୍ତୋଷ
କାମ୍ୟ ମୋର; ରଖନ୍ତୁ ନା     ଯହିଁ ଇଚ୍ଛା ତହିଁ,
ମଙ୍ଗଳମୟ ସେ ଇଚ୍ଛା,     ଥାଏ ଜୟ ଗାଇ ।
ଏହି ଭାବ ସଦା ରହୁ,     ଏତିକ କାମନା,
ମୁଁ ତ ଦାସ, ଦାସ୍ୟ କରେ,     ହୋଇ ପ୍ରୀତମନା ।
ସଂଯୋଗ, ବିଯୋଗ, ପୁଣି     ବିରହ, ମିଳନ,
ତାଙ୍କର ମଙ୍ଗଳ-ଲୀଳା,     ମଙ୍ଗଳ ବିଧାନ ।

ବିଜ୍ଞ ବୁଦ୍ଧି ଏହା, ଦୁଃଖ    ସୁଖ ସମେ ଘେନେ,
ଦୁଃଖାଗମେ, ସୁଖ ନାଶେ,    ପ୍ରସନ୍ନ ସେ ମନେ ।
ସକଳ ବିଧାନେ ଦେଖେ    ଅଖଣ୍ଡ ମଙ୍ଗଳ,
ଅଖଣ୍ଡ ସୁଖଶାନ୍ତିରେ    ସୁଖେ କାଟେ କାଳ ।
ତାଙ୍କର ସଙ୍କେତେ ବାବା !    ଆସିଛୁ ଭୂତଳେ;
ଅମୃତ ଆହ୍ୱାନେ ବିଭୁ    ନେଉଛନ୍ତି ତ କୋଳେ !
ବରାଭୟଦାତା ସେ ତ,    ସେ ଚରଣଧୂଳି,
ଅମୃତର ଅନୁଭବେ    ହେବୁ ନିତ୍ୟ ବୋଲି ।
ଏଥି ବାବୁ ! ମନେ ତୋର    ସନ୍ଦେହ ନ ଘେନ,
ସଂଶୟାତ୍ମା, ଅବିଶ୍ୱାସୀ    ଭୋଗଇ ପତନ ।
ଶ୍ରଦ୍ଧାଳୁ, ବିଶ୍ୱାସୀ ଏକା    ଯାଏ ହସି ହସି,
ପୂତ ଅନାମୟଧାମେ    ପାରେ ସୁଖେ ବସି ।
ଶ୍ରଦ୍ଧାର ଦୃଢ଼ତା, ପୁଣି    ବିଶ୍ୱାସର ବଳେ,
ଧ୍ୟାନ କରି ଧର ସେହି    ଚରଣ କମଳେ ।
ସୁଖେ ଏଥୁଁ ଯାଇ ବାବୁ !    ସୁରଲୋକେ ବସ,
ସୁଧା ଉପଭୋଗେ କର    ପରାଣ ସରସ ।
ସେ ସୁଖ ଚାଖିଲେ, ଭବ    ସୁଖ ମଉଳିବ,
ଅନିତ୍ୟ, ଅସାର, ତୁଚ୍ଛ    ଆଖିକି ଦିଶିବ ।
ତୋର ପତ୍ନୀ ପତିବ୍ରତା,    ସତୀ, ଗୁଣବତୀ,
ତା ଲାଗି ଲେଶ ନ କର    ବିଚଳିତ ମତି ।
ସାଧୁଭାବେ ଜୀବନ ଯେ    କରିଣ ଯାପନ,
କାଟି କର୍ମବନ୍ଧ ଶେଷେ    ତେଜିବ ପରାଣ ।
ନିତ୍ୟ, ଅନାମୟଧାମେ    ଯିବ ସେହୁ ଚଳି,
ତୋର ସଙ୍ଗେ ହେବ ବିଭୁ-    ଚରଣ କିଙ୍କରୀ ।

ବିଷୟ ଚିନ୍ତନେ ନର ପତନ ନିଶ୍ଚିତ,
ସେବନେ ଦାମ୍ପତ୍ୟ ସୁଖ କାମ କଳୁଷିତ
ପ୍ରତ୍ୟକ୍ଷ ନରକଦ୍ୱାରେ ହୋଇ ଅନୁରାଗୀ
ଦୁର୍ଲଭ ଜୀବନ ସାରେ, ହୁଏ ଦୁଃଖଭାଗୀ ।
ଭଗବାନ ଅନୁଗ୍ରହେ ପୁତ୍ରବଧୂ ମୋର,
ସେ ଘୋର ନରକଦ୍ୱାରୁଁ ପାଇବ ଉଦ୍ଧାର ।
ସେ ତ ଭାଗ୍ୟବତୀ, ସାଧ୍ୱୀ, ବିଭୁକୃପା ତାରେ
ରକ୍ଷାକରେ ନିରନ୍ତର, ସଂସାର-ସମରେ ।
ମାତା ତୋର ନୁହେ ଦୁଃଖୀ, ସେ ତ ସର୍ବଭୂତେ
ମଙ୍ଗଳର ଅଭିନୟ ଦେଖଇ ନିରତେ ।
ତେବେ ପୁତ୍ର ! ଆଉ କାହା ପାଇଁ ଦୁଃଖ ମନେ ?
ଶୁଦ୍ଧମନେ ସଜ ହୁଅ, ସରଗଗମନେ ।
ହସି ହସି ଯାଅ ତୁହି, ହସାଇ ହସାଇ,
ଯାଉଅଛୁ ନିତ୍ୟସୁଖ ଭୋଗିବାର ପାଇଁ ।
ଜାଣନ୍ତୁ ସରବେ ତୋର ସ୍ନେହକାଙ୍କ୍ଷୀ ଜନେ,
ଭୋଗିବୁ ଅପାର ସୁଖ ସରଗ ଭୁବନେ ।
ପୁତ୍ର ମନେ ପିତୃମୁଖୁ ସତ୍ୟ ତତ୍ତ୍ୱ କଥା
ପକାଇ ପ୍ରଭାବ, ଦୂର କଲା ସବୁ ବ୍ୟଥା ।
ମୁଖମଣ୍ଡଳେ ସରସେ ବିଭାତିଲା ଜ୍ୟୋତି,
ଓଠରେ ଖେଳିଲା ସ୍ମିତ, ଅନ୍ତରେ ପୀରତି ।
ଧ୍ୟାନ ଲଗିଲା ମୋହନ ଚରଣ କମଳେ,
ପ୍ରେମମୟ ହରିନାମ ବଦନରେ ଖେଳେ ।
ଦେଖୁଛନ୍ତି ଲୋକେ, ମୁଖେ ହସ ଅଛି ଲାଗି,
ବ୍ରହ୍ମ ରନ୍ଧ୍ର ଫୁଟି ଉଡ଼- ଗଲା ପ୍ରାଣ-ପକ୍ଷୀ ।

ପିତା-ମାତା-ପତ୍ନୀ ସବୁ ରହିଛନ୍ତି ବେଢ଼ି,
ନିତ୍ୟ ସୁଖମୟ ଧାମେ ସଜ୍ଜନଙ୍କୁ ଛାଡ଼ି
ନୁହନ୍ତି ଦୁଃଖିତ ତିଳେ, ଉତ୍‌ଫୁଲ୍ଲ ପରାଣ,
ପୁତ୍ରର ମହାଯାତ୍ରାରେ ମହାଭାବେ ମଗ୍ନ !
ତରୁଣ କୁମରେ ତେଜି ଜନକ ଜନନୀ,
ସାଧନେ ଖୋଜିଲେ ସୁଖେ ବୈକୁଣ୍ଠ-ସରଣୀ ।
ତରୁଣୀ ପେଖିଣ ପତି ସରଗ ଭୁବନେ,
ବୈଧବ୍ୟର ତପ ବରେ ଶୁଦ୍ଧପୂତ ମନେ ।
ତିନି ପ୍ରାଣୀ ଶେଷେ ଇଚ୍ଛା- ମୃତ୍ୟୁ ନେଲେ ବରି,
ହସି ହସି ଅନାମୟ- ଧାମେ ଗଲେ ଚଳି ।
ଏ ଶୁଦ୍ଧ ସାଧନା ଦେଶୁଁ ଲୁଚିଗଲା କାହିଁ ?
କହ ସର୍ବଜ୍ଞାତା ଆଉ ଫେରିବ କି ନାହିଁ ?

---

# ବାଦଶାହ ଉଳିଗଲେ

ବାଦଶାହ ଅମଳରେ ଘୋଟିଲା ଅକାଳ,
ମହାରାଷ୍ଟ୍ରେ ଅନ୍ନାଭାବେ ଉଠେ ହାହାକାର ।
ଜନ୍ଦା ପିମ୍ପୁଡ଼ିଙ୍କ ଭଳି ଲୋକେ ଗଡ଼ିମଲେ,
ଉଦର-ଜ୍ୱାଳାରେ ଛେଳି ପତର ଚରିଲେ ।
କଙ୍କାଳ ଉପରେ ଖାଲି ଚମ ଦୋହଲିଲା,
ନରର ମୂରତି ଦେଖି ନରେ ଭୟ ହେଲା ।
କ୍ଷୁଧିତର ଆର୍ତ୍ତନାଦେ କମ୍ପିଲା ଭୁବନ,
ଦବାନଳି ଦଶ ଦିଶ କଲେକ କ୍ରନ୍ଦନ ।

ଗୋଲକୁଣ୍ଡା ଅଟେ ଦେଶେ  ଶ୍ରୀବନ୍ତ ଅଞ୍ଚଳ,
ମଙ୍ଗଳବେଢ଼ା ତାହାର  ବିଭବ-ଭଣ୍ଡାର ।
ଦାମାଜୀପନ୍ତ ମହତ  ଧର୍ମଭୀରୁ ଜନ,
ସେ ତ ସୁବାଦାର, ସେଠି  କରନ୍ତି ଶାସନ ।
ପତି-ପତ୍ନୀ ପଣ୍ଡୁରଙ୍ଗ-  ସେବା କରି ସାର,
ନିଷ୍କାମେ ଲୋକସେବାରେ  କାଟୁଥିଲେ କାଳ ।
ଅକାଳ-ପୀଡ଼ିତ ପ୍ରଜା-  ବ୍ୟାକୁଳ-କ୍ରନ୍ଦନ
ଦାମାଜୀ ଅନ୍ତରେ ବାଜେ  ଅଶନି ସମାନ ।
ରାଜ୍ୟ-ଭଣ୍ଡାରେ ଅମାପ  ଧନ ଥିବ ରହି,
କପାଁ ମରୁଥିବେ ପ୍ରଜା  ହୋଇ ଦେହି ଦେହି ।
ଏ ଅକାଳେ ପ୍ରଜାଙ୍କର  ଆଶ୍ରା ରାଜବାହା,
ଅନ୍ନାଭାବ କରି ଦୂର  ସେ ତ ହେବେ ସାହା ।
ଧରିଣ ଧରମ-ଦାଣ୍ଡି  ଖୋଲିଲେ ଭଣ୍ଡାର,
କାଟିଦେଲି ଦୟା ପ୍ରାଣୁ  ବାଦଶାହ ଡର ।
ଦାମାଜୀଙ୍କ ଦୟାବଳେ  ପାଇଲେ ଜୀବନ
ସହସ୍ର ସହସ୍ର ଦୁଃଖୀ,  ଅନ୍ନକ୍ଳିଷ୍ଟ ଜନ ।
ସେବାଧର୍ମେ ଲଗିଗଲେ  ପତି-ପତ୍ନୀ ଦୁଇ,
ବିତରିଲେ ଧନ ଅନ୍ନ  ବ୍ୟାକୁଳ ସେ ହୋଇ ।
ସେ ଧରମେ ତୃପ୍ତ ହେଲେ  ନର-ନାରାୟଣ,
ସନ୍ତୋଷେ ସହସ୍ର ତୁଣ୍ଡୁ  ଉଠେ ଧନ୍ୟ ଧନ୍ୟ ।
ଦାମାଜୀଙ୍କ ସହାୟକ  ଆନ ସୁବାଦାର
ଲୋକଙ୍କ ପ୍ରଶଂସା ଶୁଣି  ହୁଏ ଈର୍ଷାପର ।
ଦୁଷ୍ଟପଣେ ଘରେ ସେହୁ  ଆଣିବ ଦୁର୍ଗତି,
ବାଦଶାହେ ଜଣାଇବ  ଦାତାଙ୍କ ଦୁର୍ମତି ।

ଯାହା ଧନେ ଦାତାଷଣ୍ଢ ଦାମାଜୀ ହୋଇଲା,
‘ଦେବଙ୍କ ନ ଦେବ’ ତାରେ ନାହିଁ ଜଣାଇଲା ।
ସହସ୍ର ଭରଣ ଧାନ କରାଇଲା ଲୁଟି,
ଏ ତ ନୁହେ ସେବକର କ୍ଷମଣୀୟ ତ୍ରୁଟି ।
ଈପ୍ସିଲା ଦାମାଜୀର କରି ସର୍ବନାଶ,
ହରିବ ଆସନ, ବଢ଼ା- ଇବ ମାନ, ଯଶ ।
ବାଦଶାହେ ଲେଖେ ପତ୍ର, “ବୁଝନ୍ତୁ ମହିମା !
ଧନାଗାର କଲା ଶୂନ୍ୟ, ବଢ଼ାଏ ଗରିମା
ଦାମାଜୀ ନଜର, ଲୋକେ କରନ୍ତି ତ ଧନ୍ୟ
ସେବକଙ୍କୁ ! ବାଦଶାହ ଲୋକରେ ନଗଣ୍ୟ ।”
କ୍ରୁଦ୍ଧ ବାଦଶାହ ପଠା- ଇଲେ ସେନାପତି,
ଦାମାଜୀଙ୍କୁ ବନ୍ଦୀକରି ନେବାକୁ ଝଟତି ।
ସହସ୍ର ସୈନିକ ଆସି ଦ୍ୱାରେ ହେଲେ ଜୁଣ୍ଡ;
ସେନାପତି ରକ୍ତଚକ୍ଷୁ, ଅତି ହିଁ ପ୍ରଚଣ୍ଡ ।
ଗରଜି ଡାକନ୍ତି ଉଚ୍ଚେ ନ ସହଇ ତର,
ଦାମାଜୀଙ୍କ ପତ୍ନୀ ଭାଷେ ହସି ହସି ଧୀର ।
“ଅଧୀର କପାଇଁ ଏତେ, ରଖନ୍ତୁ ସବୁର,
ବିଷ୍ଣୁପୂଜାରେ ନିରତ ପତି-ଦେବ ମୋର ।
ସେ ପର୍ଯ୍ୟନ୍ତ ନିତ୍ୟକର୍ମ ହୋଇନାହିଁ ପୂରା,
ସେ ଯାଏ ପାଖକୁ ଯିବ ନାହିଁ କାର ସବୁର ।”
ପତିବ୍ରତା ତେଜେ ସେନା- ପତି ଅଭିଭୂତ,
ମଉଳିଲା ବୀରପଣ, ଗରବ ଲୁପତ ।
ପତିଙ୍କର ବିଷ୍ଣୁପୂଜା ହେଲା ସମାପତ,
ପତ୍ନୀ ଜଣାଇଲେ ସେନା- ପତିଙ୍କୁ ଉଚିତ ।

ଦାମାଜୀ ବୁଝିଲେ, ରାଜା ଅନ୍ନଦାନ-ଦୋଷେ,
ବନ୍ଦୀ କରିବାକୁ ସୈନ୍ୟ ପେଷିଛନ୍ତି ପାଶେ ।
ଲେଶମାତ୍ର ଭୟ ପ୍ରାଣେ ନ କଲ ପରଶ,
ପତ୍ନୀଙ୍କୁ ଭାଷନ୍ତି ପତି ହୋଇ ହସ ହସ ।
ଦାମାଜୀ—ଏଥିରେ ତ ନାହିଁ କିଛି ଚିନ୍ତାର କାରଣ,
କର୍ତ୍ତବ୍ୟ ତ ଯଥାସାଧ୍ୟ ହୋଇଛି ପାଳନ ।
କଠୋରୁଁ କଠୋରତର ଦଣ୍ଡ ସେଥିପାଇଁ,
ମିଳୁନା ପ୍ରସ୍ତୁତ ପ୍ରାଣ, ଭୟ ଲେଶ ନାହିଁ ।
ସୃଷ୍ଟିର ମଙ୍ଗଳ ପାଇଁ ସକଳ ବିଧାନ,
ସକଳ ବିଧାନେ ଦୟା ଅଛି ପରିପୂର୍ଣ୍ଣ ।
ପରାଣର ଦୟାଭାବ ବିଭୁଙ୍କ ପ୍ରେରଣା,
ତାଙ୍କର ସନ୍ତୋଷ, ତୃପ୍ତି ଆମରି କାମନା ।
ଦେଖୁଛନ୍ତି ପଣ୍ଡୁରଙ୍ଗ ସମସ୍ତ କରଣୀ,
ଦେବେ ସେ ନର ସମୁଚିତ ଫଳ କର୍ମ ଘେନି ।
ପତ୍ନୀରେ ଆଶ୍ୱାସ ଦେଇ ଦାମାଜୀ ବାହାରେ,
ଆସିଣ ସରସେ ସେନା- ପତିରେ ଭେଟିଲେ ।
ଶାନ୍ତ ସୌମ୍ୟ ମୁଖାକୃତି, ତେଜପୂର୍ଣ୍ଣ ରୂପ,
ଦେଖି ସେନାପତିଙ୍କର ଅହଙ୍କାର ଲୋପ ।
ଧୀର ନମ୍ରଭାବେ କହେ, "ନୃପତି ଆଦେଶ,
ସଙ୍ଗେ ଯିବେ ନ କରିଣ ବିଳମ୍ବ ବିଶେଷ ।"
ଦାମଜୀ—ଆଚ୍ଛା, ଆଚ୍ଛା, ଯାଉଅଛି ନ କରିଣ ଡେରି,
ପତ୍ନୀଙ୍କୁ ଆଶ୍ୱାସ ଦେଇ ଆସୁଛି ବାହାରି ।
ପତି ଗିରଫ୍ତାର କଥା ଶୁଣି ପତିବ୍ରତା,
ହେଲ ନାହିଁ ବିଭୁଭକ୍ତା ଲେଶ ବିଚଳିତା ।

ଅଛି ସ୍ଥିର ଘଟେ କାନ୍ତେ  କହଇ ରମଣୀ,
ପତ୍ନୀ—ଏ ସବୁ ତ ବିଭୁଙ୍କର  ମଙ୍ଗଳ କରଣି ।
ଯାହା କର୍ତ୍ତା ପଣ୍ଢରଙ୍ଗ  କରନ୍ତୁ ବିଧାନ,
ହିତ ଛଡ଼ା ଅହିତ ତ  ନାହିଁ ତହିଁ ଜାଣ ।
ଏକାନ୍ତ ନିବିଷ୍ଟ ମନେ  ଭଜନର ପାଇଁ,
ଦେଇଛନ୍ତି ଦୟାମୟ  ସୁଯୋଗ ଯୁଟାଇ !
ମୋର କିନ୍ତୁ ପ୍ରାଣନାଥ !  ଏକମାତ୍ର ଦୁଃଖ,
ହେବ ନାହିଁ ଶ୍ରୀଚରଣ-  ସେବା ଦିବ୍ୟ ସୁଖ ।
ଦାମାଜୀ ବିଦାୟ ନେଇ  [ଆସିଲେ ବାହାରେ,
ସେନାପତି ହାତକଡ଼ି  ଦିଅଇ ହାତରେ ।
ବନ୍ଦୀ ହେଲେ, ନାହିଁ ଦୁଃଖ,  ପଦଚ୍ୟୁତି-ଭୟ
ଧୀର ପ୍ରାଣେ; ବିଭୁଧ୍ୟାନେ  ପରିଣ ତନ୍ମୟ ।
ମଙ୍ଗଳମୟ ବିଭୁଙ୍କ  ନାମ ସଙ୍କୀର୍ତ୍ତନ
କରି, ସନ୍ତୋଷେ ଭକତ  କରନ୍ତି ଗମନ ।
ପଣ୍ଢରପୁର ପଡ଼ିଲା  ଗୋଲକୁଣ୍ଡା ମାର୍ଗେ,
ବିଠ୍ଠଲ ଦର୍ଶନ ଇଚ୍ଛା  ସେନାପତି ଆଗେ
ଜଣାନ୍ତି ଭକତ, ପ୍ରୀତ  ପାଇ ଅନୁମତି;
ମନ୍ଦିରେ ଯାଇ ବିଭୁଙ୍କ  ବିହିଲେ ପ୍ରଣତି ।
ମୂରତି-ଦର୍ଶନେ ପ୍ରେମେ  ନେତ୍ର ନୀର ଝରେ,
କମ୍ପ, ସ୍ୱେଦ, ଅଙ୍ଗେ ଅଙ୍ଗେ  ପୁଲକ ସଞ୍ଚରେ ।
ସମ୍ଭାଳଣ ଭାବାବେଶ,  ଆରମ୍ଭିଲେ ସ୍ତୁତି;
ବିଳମ୍ବରେ ବିତିବ୍ୟସ୍ତ  ତେଣେ ସେନାପତି ।
ଡାକ ପରେ ଡାକ ପଡ଼େ;  ଘଟେ ନିମଗନ;
ଶେଷେ ଭକତ ବିହିଲେ  ସାଷ୍ଟାଙ୍ଗ ପ୍ରଣାମ ।

ବିଭୁଙ୍କ ମୋହନ ମୂର୍ତ୍ତି    ହୃଦୟରେ ଧରି,
ପ୍ରସନ୍ନ ମନେ ଆସନ୍ତି    ମନ୍ଦିରୁ ବାହାରି ।
ସେନାପତି ଦାମାଜୀଙ୍କୁ    ନେଇଣ ସଙ୍ଗତେ,
କ୍ଷିପ୍ରପଦେ ଅଗ୍ରସର    ହୁଅନ୍ତି ଉଷତେ ।
ସେନାପତିରେ ବାଦଶା    ରହନ୍ତି ଗର୍ଜ୍ଜି
ବିଳମ୍ବରେ ବଢ଼େ କ୍ରୋଧ,    ଅଧର କମ୍ପଇ ।
ଦାମାଜୀଙ୍କୁ ବନ୍ଦୀ-ରୂପେ    ସମ୍ମୁଖେ ନିରେଖି,
ତୃପ୍ତ ହେବ ପ୍ରାଣ-ମନ,    ହୋଇବେ ସେ ସୁଖୀ ।
ଏ ସମୟେ କାହୁଁ ଏକ    ଜାନପଦ ଜନ,
କିଶୋର ବୟସ, ଗୃରୁ    ଶ୍ୟାମଳ ବରଣ,
ହସ୍ତେ କ୍ଷୁଦ୍ର ଯଷ୍ଟି, କାନ୍ଧେ    କମ୍ବଳ କାଳିଆ,
ନିର୍ଭୟେ ଆସିଣ ବାଦ-    ଶାହ ପାଶେ ଠିଆ !
ଜୁହାର କରିଣ କହେ,    "ଜ୍ଜୁମ୍ ! ସରକାର !
ମଙ୍ଗଳବେଢ଼ା ଅଞ୍ଚଳୁ    ଆସିଛୁ ଗୃକର ।
ସ୍ୱାମୀ ଦାମାଜୀ ପନ୍ତଙ୍କ    ଅନ୍ନରେ ପାଳିତ,
ବହୁ ଦିନୁଁ ଏ ଚମାର    ସେବାରେ ନିରତ ।"
ଦାମାଜୀଙ୍କ ନାମ ଶୁଣି    ଆରକ୍ତ-ଲୋଚନ
ବାଦଶାହ ପଚାରନ୍ତି,    "କିସ ତୋର ନାମ ?"
ବିଠ୍ଠୁ—ବିଠ୍ଠୁ ନାମ ସରକାର !    ବ୍ୟବସା ଚମାର,
ଦାମାଜୀ ପନ୍ତଙ୍କ ଏହୁ    ଚରଣ-କିଙ୍କର ।
ସୁନ୍ଦର ଅପୂର୍ବ ରୂପ,    ବଚନ ମଧୁର,
ହରିନେଲ ପ୍ରାଣ-ମନ,    ବାଦଶା ବିଭୋର ।
ଏକଲୟେ ଦେଖନ୍ତି ସେ    ବିଠ୍ଠୁଙ୍କୁ ନିରେଖି,
କ୍ରୋଧ ମଉଳିଲା, କାଢ଼ି    ନ ପାରନ୍ତି ଆଖି ।

ବାଦଶାହ—କି କାମେ ଆସିଲୁ ବେଟା, ଏ ଯେ ଦରବାର,
ବିଠୁ—ସରକାର ! ଅପରାଧ କ୍ଷମା ହେଉ ମୋର !
ଅନ୍ନାଭାବେ ମଲେ ଶୋକେ ପ୍ରିୟ ପ୍ରଜାଗଣ;
ବିଦୀର୍ଣ୍ଣ ହୋଇଲା ସ୍ୱାମୀ- କୋମଳ-ପରାଣ ।
ପ୍ରଜାଙ୍କର ଦୁଃଖେ ସଦା ବହେ ଅଶ୍ରୁଧାର,
ସମ୍ଭାଳି ନ ପାରି ଶେଷେ ଖୋଲିଲେ ଭଣ୍ଡାର ।
ଭଣ୍ଡାର ଖୋଲିଣ ଅନ୍ନ କଲେ ବିତରଣ,
ସହସ୍ର ସହସ୍ର ପ୍ରଜା ପାଇଲୁ ଜୀବନ ।
ଧନ୍ୟ ହେ ବାଦଶା ତୁମେ ! ଧନ୍ୟ ସୁବାଦାର !
ରଖିଲ ଅକାଳୁଁ ପ୍ରଜା, କୀରତି ତୁମର ।
ଭଣ୍ଡାର-ଧାନର ମୂଲ୍ୟ କଉଡ଼ା କ୍ଷାନ୍ତ ଲେଖି,
ଆଦେଶନ୍ତୁ କୋଷାଧ୍ୟକ୍ଷେ ନଅନ୍ତୁ ନା ଦେଖି ।
ରାଜଭଣ୍ଡାରରେ ଧନ ରଖନ୍ତୁ ଯତନେ,
ଦିଅନ୍ତୁ ରସିଦ ତାର ଏ ସେବକ ଜନେ ।
ବାଦଶାହା ହୋଇଗଲେ ଅବାକ, ଲଜ୍ଜିତ;
ଅନ୍ତରରେ ଘୋର ପଶ୍ଚା- ତ୍ତାପ ତରଙ୍ଗିତ ।
ବିଠୁର ଅପୂର୍ବ ରୂପ, ବିଚିତ୍ର ବଚନ,
ସେ ତରଙ୍ଗେ ଯୋଗକଲା ପ୍ରଳୟ ପବନ ।
ବ୍ୟାକୁଳ ପରାଣେ ସେ ତ ରହିଲେ ଅନାଇଁ
ପ୍ରସ୍ତର ମୂରତି ସମ, ମୁଖେ କଥା ନାହିଁ ।
ଭାବିଲେ, "କି କଲି ମୁଁ ! କି କଲି ଗୁଣ୍ଡାଳ !
ସଚ୍ଚା ସେବକ ଦାମାଜୀ, ମଣିଲି ମୁଁ ଚୋର !
ଠକ ବଦମାସ ସଙ୍ଗ ଦେଇ କଡ଼ ହାତେ;
ଚଳାଇ ଆଣିଲି ଦାଣ୍ଡେ, ଜାଣିଲେ ଜଗତେ !"

ବଣ୍ଠୁ ଆଣି ଥୋଇଦେଲା ମୁଦ୍ରାପୂର୍ଣ୍ଣ ଥଳୀ,
ପୁଣି ବରଷିଲା ସେହି ମଧୁ ବାକ୍ୟାବଳୀ ।
ବଣ୍ଠୁ—ସରକାର ! ଦେଖୁଛନ୍ତି, ହେଲା ବଡ଼ ଡେରି;
ଶୀଘ୍ର ବିଦାୟ ହୁଅନ୍ତୁ ଅର୍ଥ ଜମାକରି ।
ବାଦଶା ପରାଣ ଇଛେ, "ରହିଥାନ୍ତେ ଚାହିଁ
ଜଗତମୋହନ ବଣ୍ଠୁ ରୂପେ ଭୋଳ ହୋଇ ।
ଭଲେ ହେଲେ ବଣ୍ଠୁ କେଣେ ନୁହନ୍ତା ଅନ୍ତର,
ଆଦର-ପିତୁଳା, ନୁହେ ସାମାନ୍ୟ ଚାକର ।"
ବଣ୍ଠୁ-ପ୍ରାର୍ଥନା ଭଙ୍ଗିବେ, ନ ହେଲା ଶକତି;
ଆଦରରେ ପେଷିଦେଲେ ଖଜାଞ୍ଚୀର କତି ।
ଖଜାଞ୍ଚୀର ଭାଗ୍ୟ, ଦେଖେ ରୂପ ଅଦଭୁତ,
ଥଳୀରୁ ନିଅଇ ଟଙ୍କା ନ ସରେ କିଞ୍ଚିତ୍ ।
ଯେତେ କାଢ଼ିନିଏ ଟଙ୍କା ଭରେ ତେତେ ପୁଣି,
ଭାବେ, "ବଣ୍ଠୁ ଯାଦୁକର, ଜାଣେ କିଛି ଗୁଣି ।"
ଖଜାଞ୍ଚି ରଖିଲା ଟଙ୍କା କଡ଼ା ଦାଢ଼ ଯୋଖି,
ବେଭର-ପରୱେଶ ଦେଲା ରସିଦ ସେ ଲେଖି ।
ରସିଦ ଧରିଣ ବଣ୍ଠୁ ଆସେ ଦରବାରେ,
ମୋହର-ସ୍ୱାକ୍ଷର ଦେଲେ ବାଦଶା ତହିଁରେ ।
ବଣ୍ଠୁ—ଯାଉଛି ମଣିମା ! ବିଦା ହୁଅନ୍ତୁ ଚମାରେ,
ଦର୍ଶନ ମିଳିବ କାହିଁ ? ରଖିବେ ମନରେ ।
ଅଭିବାଦନ କରିଣ ବଣ୍ଠୁ ବିଦାହେଲା,
ଦେବାନଙ୍କୁ ସଙ୍ଗେ ସଙ୍ଗେ ଡକରା ପଡ଼ିଲା ।
ଦେବାନ ଆସିଲେ, ଆଜ୍ଞା ଦେଲେ ବାଦଶାହ,
"ଦାମାଜୀଙ୍କୁ ଆଣ, ଉଚ୍ଚସମ୍ମାନର ସହ ।"

ଦିନେ ପ୍ରାତଃକାଳେ ପଥେ    ସ୍ନାନ ଶୌଚ ସାରି,
ଦାମାଜୀ ଅଛନ୍ତି ବସି,    ଗୀତା ପୋଥି ଖୋଲି ।
ଯାଉଛନ୍ତି ଗୁଣିବାକୁ    ଦେଖିଲେ ଅଦ୍ଭୁତ,
ରସିଦ ପଡ଼ିଲା ଖସି,    ଅଛି ଦସ୍ତଖତ
ବାଦଶାଙ୍କ, ଲେଖା ଅଛି    ସୁନ୍ଦର ଅକ୍ଷରେ,
"ଦାମାଜୀଙ୍କଠାରୁ ନେଲି    ଚୁକ୍ତି ଅନୁସାରେ
ଯେତେ ଟଙ୍କା ପ୍ରାପ୍ୟ ମୋର    ଧାନଭଣ୍ଡାରର;
ଦରକାରେ ଆସିବ ଏ    ସ୍ୱାକ୍ଷର, ମୋହର ।"
ଅପାର ବିସ୍ମୟେ ଗୀତା-    ପଠନେ ନିରତ,
ହୋଇଲେ ତନ୍ମୟ ଭାବେ    ଶ୍ରୀହରିଭକତ ।
ଗୀତାପାଠ ସାରି ପ୍ରେମେ    ଦେଖନ୍ତି ସେ ଗୃହଁ,
ଦେବାନ ସମ୍ମୁଖେ ଉଭା    ନବ ଆଜ୍ଞା ନେଇ !
ହାତକଡ଼ି ସେନାପତି    ଖୋଲିଲେ ତକ୍ଷଣେ,
ସବାଗରେ ସୁବଦାର    ବସିଲେ ସମ୍ମାନେ ।
ତେଣେ ବାଦଶାଙ୍କ ଦଶା    ହେଲା ଅଦ୍ଭୁତ,
ବଟ୍ଠୁ ଯିବା ପରେ ହେଲା    ପାଗଳମି ଜାତ ।
'ବଟ୍ଠୁ, ବଟ୍ଠୁ' ବୋଲି ଉଚ୍ଚେ    ଛାଡ଼ିଲେ ଚିତ୍କାର,
ଚୁରିଦିଗେ ବରଗିଲେ    ଅଶ୍ୱାରୋହୀ ଚର ।
ବଟ୍ଠୁକୁ ଦେଖିବା ପାଇଁ    ଉଦ୍ଭ୍ରାନ୍ତ ପରାଣ,
ନ ପାଇ ଆସିଲେ ଫେରି    ଅଶ୍ୱାରୋହୀଗଣ ।
'କାହିଁ ଗଲା ମୋର ବଟ୍ଠୁ,    ବଟ୍ଠୁ କାହିଁ ଗଲା ?'
କହି କହି ବାଦଶାଙ୍କୁ    ମାରିଗଲା ଝୋଲା ।
ରାଜଧାନୀ ଛାଡ଼ି ଦୂରେ    ଯାଆନ୍ତି ପଳାଇ,
ଦାମାଜୀଙ୍କୁ ଦେଖି ପଥେ    ଧରିଲେ କୁଣ୍ଢାଇ ।

ଅନ୍ତକାଳର ଶରଣ, ବାଦଶା ଅଥର୍ବ,
ବାଦଶାହ—ଦାମାଜୀ, ଦାମାଜୀ ! ବେଗେ ବତାଅ, ବତାଅ ।
କାହିଁ ଗଲା ବଟ୍ଠୁ ମୋର, ବଟ୍ଠୁ ଗଲା କାହିଁ ?
ନ ଦେଖିଲେ ତାକୁ ପ୍ରାଣ ରହିବ ତ ନାହିଁ ।
ପାପୀ ମୁହିଁ, ମହାପାପୀ, କହ କହ ମୋତେ,
କହ ତ କାହିଁ ମୋ ବଟ୍ଠୁ ଦୟା କର ମୋତେ ।
ଧରୁଛି ଚରଣ ବେଗେ ହଅ ମୋତେ କହ,
କାହିଁ ଅଛି ବଟ୍ଠୁ ମୋର, ଧରିବ ମୁଁ ଯାଇଁ ।
ବାଦଶାଙ୍କ କଥା ଶୁଣି ଦାମାଜୀ ବିସ୍ମିତ,
ଦାମାଜୀ—ହଜୁର ! ବଟ୍ଠୁ କଏ ସେ ? କା ପାଇଁ ଭାବିତ ?
ବାଦଶାହ—ଲୁଚଅନା, ଦାମାଜୀ ହେ ! ଯୋଡ଼ିଅଛି ହାତ,
ତୁମରି ଚମାର ବଟ୍ଠୁ, ତୁମରି ତ ଭୃତ୍ୟ ।
ସେ ତ ଘନଶ୍ୟାମ ତନୁ, ନବୀନ ବୟସ,
ପୀତକାଛା ଅଛି ପିନ୍ଧି, ମୁଖ ହସହସ ।
ଧରିଅଛି କ୍ଷୁଦ୍ର ଯଷ୍ଟି, କାନ୍ଧେ ଟଙ୍କାଥଳୀ,
ମୂରୁଛିଲି ମୁଁ ପାମର, ସତେ ଗଲା ଚାଲି !
ତୁମରି ତ ଟଙ୍କା ଥଳୀ ଥୋଇଲା ଆଗରେ,
ଗଣିଦେଲା ସବୁ ଟଙ୍କା ଖଜାଞ୍ଚି ପାଖରେ ।
ରସିଦ ଆଣିଣ ଦେଲା, କଲି ମୁଁ ସ୍ୱାକ୍ଷର,
ଅଫିସ ମୋହର ମାରି ହାତେ ଦେଲି ତାର ।
କାହିଁଗଲା ବଟ୍ଠୁ କହ ପରାଣସଂଖାଳୀ,
ଚରଣ ଧୋଇବି ତାର ପ୍ରେମ-ଅଶ୍ରୁ ଢାଳି;
ଅଙ୍ଗେ ଅଙ୍ଗ ଭିଡ଼ି କରିବି ମୁଁ ଆପଣାର,
ବନ୍ଧୁ-ଓଷ୍ଠୁ ମଧୁବାଣୀ ଶୁଣୁଥିବି ତାର ।

ଆହା କି ସୁନ୍ଦର ମୁଖ, କମଳ-ନୟନ,
ଥରେ ଦେଖି ଥୟ ହେବ କାହାର ପରାଣ ?
ଦାମାଜୀ ! କହ ତ ବେଗେ, ବଦରେ ଅନ୍ତର,
ତୁମେ କି ନ ଜାଣ ସତେ ତୁମର ଠାକୁର !
  କ୍ଷଣକେ ବିଭୁଙ୍କ ଲୀଳା ବୁଝିଲା ଭକତ,
ପ୍ରେମେ କଣ୍ଟକିଲା ତନୁ, ହେଲା ଅଶ୍ରୁପାତ ।
ଆକୁଳ ରୋଦନ-ସ୍ୱରେ ଭାଷଇ ଦାମାଜୀ,
"ଧନ୍ୟ ତୁମେ ବାଦଶାହ ! ଧନ୍ୟ ଦିନ ଆଜି !
ତ୍ରିଭୁବନନାଥଙ୍କର ପାଇଲ ଦର୍ଶନ, '
କଟିଗଲା ଭବଭୟ, କରମ-ବନ୍ଧନ ।
ଛାର ଏ ଅଭାଗା ପାଇଁ ପ୍ରଭୁ ଜଗଦୀଶ,
ଧରିଲେ ମୀଚ ଦରିଦ୍ର ଚମାରର ବେଶ !
ବୈକୁଣ୍ଠ ଛାଡ଼ିଲ ଛାର ମାନବର ପାଇଁ,
ନରେ ଖୋସାମତ କଲ କଥା ଗୁହାରି ଆଳି ।
ସର୍ବେଶ୍ୱର ! ଦୟାଧାମ ! କି ହୁଅନ୍ତା ମୋର
ଭଣ୍ଡାର ଲୁଟିର ଫଳେ ? ଜୀବନ ନଶ୍ୱର
ବଡ଼ ହେଲେ, ଯାଇଥାନ୍ତା; ସହି କଷ୍ଟ ଏତେ,
ଦାସ, ଅନୁଦାସ ପାଇଁ ଆସିଲ ମରତେ !
ଧନ୍ୟ ପଣ୍ଡୁରଙ୍ଗ ! ଧନ୍ୟ ଭକତବତ୍ସଳ !
କହି କହି ପଦ ତଳେ ମୂର୍ଚ୍ଛିତ ହୋଇଲ ।
ଖେଳିଗଲା ଚଉଦିଗେ ଘନନୀଳ ଜ୍ୟୋତି,
ଉଭାହେଲେ ବିଭୁ ଧରି ବିଠୁର ମୂରତି ।
କୃତାର୍ଥ ଭକତ, ହେଲେ କୃତାର୍ଥ ବାଦଶା,
ବିଠୁକୁ ଦେଖିବେ ପୁଣି ନ ଥିଲା ଭରସା ।

ଭକତସର୍ବସ୍ୱ ! ବିଠୋବା ! ଭକତଭରସା !
ଭକତକୀରତି ଗାଏ, ଦିଅ ତୁଣ୍ଡେ ଭାଷା ।
ଭକତଚରଣ ଧୁଏ, ପ୍ରେମ-ଅଶ୍ରୁ ଢାଳି ।
ଯାଉ ଜୀବନ ଭକତ ଗୁଣ ଭାଳି ଭାଳି ।



# ବିଠୁଙ୍କ ବ୍ରହ୍ମରାକ୍ଷସ ରୂପ !

ହାଇଦ୍ରାବାଦ ଦକ୍ଷିଣ ଦେଶେ ଖ୍ୟାତନାମ,
'ନାରସୀ ବ୍ରାହ୍ମଣୀ' ନାମେ ତହିଁ ଏକ ଗ୍ରାମ ।
ସେ ଗ୍ରାମରେ ଦାମା ସେଠ ପ୍ରଧାନ ଭକତ,
ଦରଜିର କାମେ ସେହୁ ଚଳାଏ ତା କୃତ୍ୟ ।
ପତ୍ନୀ ତା ଶୋଣାଈ ଗୁଣ- ବତୀ ପତିବ୍ରତା,
ପ୍ରଭୁରେ ଅପାର ଭକ୍ତି, ଗୃହକର୍ମେ ରତା ।
ସେହି ଭାଗବତ କୁଳେ ପୁରୁଷେ ପୁରୁଷେ
ଜନମିଲେ ଯତିଶ୍ରେଷ୍ଠ ଖ୍ୟାତନାମା ଦେଶେ ।
ଶୁକ୍ଳ ପ୍ରତିପଦା ତିଥି କାର୍ତ୍ତିକ ମାସରେ
ରବିବାର ପ୍ରାତେ ଭକ୍ତ- ଦମ୍ପତିଙ୍କ କୋଳେ
ଜନ୍ମ ହେଲେ ନାମଦେବ ଶୁଭଲଗ୍ନ ଯୋଗେ;
ବଢ଼ାଇଲେ ପିତାମାତା ଅପାର ସରାଗେ ।
ପୂର୍ବ ପୁରୁଷର ପ୍ରଭୁ- ପ୍ରୀତି, ଧର୍ମଭାବ
ନାମଦେବ ଦେହେ ହେଲା ସକଳ ସମ୍ଭବ ।
ପିତାମାତା ବିଷ୍ଣୁଭକ୍ତ, ବିଠ୍ଠଳେ ଭକତି,
ସଦା ବିଭୁଗୁଣ-ଗାନ, ସେବା, ପୂଜା, ନତି ।

ଶିଶୁ ଦିନୁ ଦେଖି ଶିଖି ସୁଯୋଗ୍ୟ ତନୟ,
ନାମଦେବ ବିଠ୍ଠଲରେ ହୋଇଲ୍ ତନ୍ମୟ ।
ହୃଦରେ ବିଠ୍ଠଲ ଦେବ, ବିଠ୍ଠଲ ଭଜନ;
ବିଠ୍ଠଲରେ ସେବା ପ୍ରୀତି, ବିଠ୍ଠଲରେ ମନ ।
ଥରେ ଦାମା ସେଠ ଘରୁ ଗଲେ ବହୁ ଦୂରେ;
ନାମଦେବେ ନିଯୋଜିଲେ ବିଠ୍ଠଲ ପୂଜାରେ ।
ଦିଅଁ ଘରେ ନାମଦେବ ବସି ପୂତମନେ,
ଗନ୍ଧ, ମାଲ୍ୟ, ଧୂପ, ଦୀପ ଅରପେ ଯତନେ ।
ଶେଷେ ଦୁଗ୍ଧ ନଇବେଦ୍ୟ କରିଣ ଅର୍ପଣ,
ବସି ଭକ୍ତିପୂତ ମନେ ମୁଦିଲ୍ ନୟନ ।
କିଛି କ୍ଷଣେ ନେତ୍ର ଖୋଲି ଦେଖିଣ ବିସ୍ମିତ,
ଦୁଗ୍ଧ ପୂର୍ବବତ ଅଛି, ନ ହୋଇ ଗୃହୀତ ।
ନାମଦେବ ଭାବେ, "କେଉଁ ଅଜଣା ପାତକେ;
ବିଠ୍ଠଲ ପିଇଲେ ନାହିଁ, ମୋ ହାତରେ ଟୋକେ !"
ବାଳକ କାତରପ୍ରାଣେ କରଇ ପ୍ରାର୍ଥନା,
ଦୀନଭାବେ ଡାକେ, ପ୍ରଭୁ ନ କଲେ ତ ଘେନା ।
ନାମଦେବ ଦୁଃଖଭରେ କହେ କାନ୍ଦି କାନ୍ଦି,
"ବିଠ୍ଠଲ ! ମୋ ହାତୁଁ ଦୁଧ ନ ପିଇବ ଯଦି,
କରୁଛି ପ୍ରତିଜ୍ଞା, ଦୁଧ ନ ଛୁଇଁବି କେବେ
ଜୀବନକୁ, ପ୍ରଭୁ ସୁଖେ ରହିବ ତ ତେବେ !"
ଘରର ପ୍ରସ୍ତରମୂର୍ତ୍ତି ବାଳକ ବିଶ୍ବରେ;
ସାକ୍ଷାତ ବିଠ୍ଠଲଦେବ, ପୂଜେ ଭକ୍ତିଭରେ
ବୁଝି ନ ପାରିଲ୍ କେବେ, କାହିଁକି ଦେବତା
ନ ପିଅନ୍ତି ହାତୁଁ ଦୁଧ, ନ ଶୁଣନ୍ତି କଥା ।

ବାଳକ-ପ୍ରାଣର ଏହି ଶୁଦ୍ଧ ପ୍ରେମଭାବ,
ବିଠ୍‌ଠଲଙ୍କୁ ହେଲା ବୋଧ, ଦୁର୍ଲଭ, ଅପୂର୍ବ ।
ପ୍ରକଟ ହୋଇଲେ ପ୍ରଭୁ ଦିବ୍ୟମୂର୍ତ୍ତି ଧରି,
ହସି ହସି ଗଲେ ଚାଲି, ଦୁଧ ପିଇସାରି ।
ସେହି ଦିନୁ ପଣ୍ଢରୀଶ ନିତି ନିତି ଆସି,
ନାମଦେବ ହାତୁଁ ଦୁଧ ପିଉଥିଲେ ହସି ।
କୁଳପ୍ରଥା ଅନୁସାରେ ଅଳପ ବୟସେ
ପୁତ୍ରେ ବିଭାଦେଲେ ପିତା ଅପାର ହରଷେ ।
ଧନିକ ଗୋବିନ୍ଦ ସେଠ, ରାଜାଈ ତା କନ୍ୟା;
ରୂପେ ନାମଦେବତୁଲ, ଗୁଣେ ଥିଲା ଧନ୍ୟା ।
ଗୁଣବନ୍ତ ବଧୂ ପାଇ ପିତା ମାତା ଖୁସି;
କୁଣ୍ଢେଇ ଖେଳି ଭାବନ୍ତି ପୁଅ ଦିଏ ହସି ।
ପିତାଙ୍କର ମୃତ୍ୟୁ ପରେ ପଡ଼େ ଘର-ଭାର
ଉପରେ, କି ହେବ ସେ ତ ବିଭୁ ଭାବେ ଭୋଳ ।
ଭଜନେ, ପୂଜନେ ସଦା ଉନ୍ମତ୍ତ ପରାଣେ,
ମାତା ପତ୍ନୀଙ୍କ ନିଦେଶ ଶୁଣିଲେ ସେ ନ ଘେନେ ।
ଗ୍ରାମରୁ ପଣ୍ଢରପୁରେ ଯାଇଁ ସୁଖେ ବସେ,
ବଡ଼ ବଡ଼ ଭକ୍ତ ସଙ୍ଗେ ମିଶେ ପ୍ରୀତି-ରସେ ।
ଚନ୍ଦ୍ରଭାଗାନଦୀ-ସ୍ନାନ, ଭକତେ ମିଳନ,
ନିତି ପଣ୍ଢରୀଶ ପ୍ରଭୁ ବିଠ୍‌ଠଲ ଦର୍ଶନ,
ପ୍ରଭୁଗୁଣ-ସଙ୍କୀର୍ତ୍ତନ, ଉନ୍ମତ୍ତ ଭଜନ,
ଏଥିରେ ହିଁ ନାମଦେବ କଟାଇଲେ ଦିନ ।
'ଅଭଙ୍ଗ', ନାମଦେବଙ୍କ ଅଦ୍ଭୁତ ରଚନା,
ଭକ୍ତି, ଭାବ, ତତ୍ତ୍ୱଜ୍ଞାନ, ବିଠ୍‌ଠଲ-ମହିମା,

ତରୁଣ-ପରାଣ-ପ୍ରୀତି, ସରସ ଉନ୍ମାଦ,
ପ୍ରେମ-ତରଙ୍ଗରେ ଭରି ଗଢ଼ିଲେ ସେ ପଦ ।
ସିଦ୍ଧ ଜ୍ଞାନେଶ୍ୱରଙ୍କର ହେଲା ବଡ଼ ମନ,
ନାମଦେବେ ନେଇଯିବେ କରି ତୀର୍ଥାଟନ ।
ନାମଦେବ—ପାଣ୍ଡୁରଙ୍ଗ ଯେବେ ଦେବେ ଆଜ୍ଞା ଯିବା ପାଇଁ;
ସଙ୍ଗେ ଯିବି ତୀର୍ଥାଟନେ କିଛି ମନା ନାହିଁ ।
ବିଠ୍‌ଠଲ—ବଡ଼ ଅଲଅଲ ପୁଅ, ପରାଣ ଦୋସର,
ସହି ନୁହେ କ୍ଷଣେ ହେଲେ ପାଖରୁ ଅନ୍ତର ।
ତୋର ସଙ୍ଗେ ଗଲେ ଜ୍ଞାନ ! ନାହିଁ ମୋର ମନା;
ସମ୍ଭାଳପାରିବୁ କି ତୁ କଷ୍ଟହେବ ସିନା !
ଏହା କହି ପଣ୍ଡୁରଙ୍ଗ ନାମଦେବ କରେ
ଧରି, ଅରପିଣ ଦେଲେ ସିଦ୍ଧ ଜ୍ଞାନେଶ୍ୱରେ ।
ନାମଦେବ ଜ୍ଞାନେଶ୍ୱର ସଙ୍ଗେ ବୁଲିଗଲେ;
ନାନା ତୀର୍ଥ ଦେଖିଲେ ସେ ଭାରତମଣ୍ଡଳେ ।
ଜ୍ଞାନମୂର୍ତ୍ତି ଜ୍ଞାନେଶ୍ୱର ତତ୍ତ୍ୱ ଆଲୋଚନା
କରି, ପାଖେ ପାଖେ' ଛନ୍ତି ସଦା ପ୍ରୀତମନା ।
ପଣ୍ଡୁରଙ୍ଗ ବିରହରେ ବ୍ୟାକୁଳ-ପରାଣ
ନାମଦେବ, ଯେତେ ହେଲେ ନ ବୁଝଇ ମନ ।
'ସର୍ବବ୍ୟାପୀ ବିଭୁ' ବୁଝା- ଅନ୍ତି, ଜ୍ଞାନେଶ୍ୱର,
ଅଣୁ-ଅଣୁ-ବ୍ୟାପୀ ମିଳେ ଅମୃତ ସଞ୍ଚାର ।
ନାମଦେବ—ଠିକ କଥା କହୁଛନ୍ତି, ନାହିଁ କିଛି ଭୁଲ;
ଗରୁଡ଼ ପଛରେ ଥାଇ ବଦନ-କମଳ
ପଣ୍ଡୁରଙ୍ଗ ପ୍ରଭୁଙ୍କର କରି ଦରଶନ,
କି ଯେ ସୁଖ ମିଳେ ! ଏବେ ନ ସରଇ ଦିନ ।

ଜ୍ଞାନେଶ୍ୱର ପଚ୍ଚରନ୍ତି, କହ ନାମଦେବ,
ଭଜନ ସମ୍ବନ୍ଧେ କିଛି ମନୋଗତ ଭାବ ।
ନାମଦେବ—ଜ୍ଞାନ ମୋର ଗଗେ୍ୟକାହିଁ ?ମୁଁ ତ ଜ୍ଞାନହୀନ ;
ନୁହେ ବହୁଶ୍ରୁତ, ମୁଁ ଯେ ଦୀନ, ଅକିଞ୍ଚନ ।
ଭରସା ମାତର ପ୍ରଭୁ- ଚରଣ-କମଳ;
ପ୍ରଭୁନାମ ସଂକୀର୍ତ୍ତନ ବଡ଼ ପ୍ରିୟ ମୋର ।
ସେହି ମୋ ଭଜନ; ଗୁଣ ଦୋଷ ନ ବିଚାରି,
ସର୍ବ ଜନେ ସାଧୁ, ନମ୍ର ବ୍ୟବହାର କରି,
ସେହି ତ ମୋର ବନ୍ଦନ; ଶୁଣନ୍ତୁ ମୋ ଧ୍ୟାନ—
ଏକ ମାତ୍ର ବିଭୁ ସାର ବିଶ୍ୱରେ ଦର୍ଶନ,
ହୃଦେ ତାଙ୍କର ଚରଣ- କମଳ-ସ୍ମରଣ;
ମୁଖେ ରହିଥିବ ନାମ, ସର୍ବେନ୍ଦ୍ରିୟ ଲୀନ
ହେଲେ ସେ ଶବଦେ, ଭାବେ ସେହି ତ ଶ୍ରବଣ ।
ନିଦିଧ୍ୟାସନ—ବିଭୁର ପଦାନୁସନ୍ଧାନ ।
ସର୍ବଭାବେ ଧ୍ୟାନେ ବିଭୁ, ସର୍ବଘଟେ ସେହି
ସତ୍ତ୍ୱାନୁସନ୍ଧାନ ପାଇଲେ, ଭକ୍ତି ତାକୁ କହି ।
ଅନୁରାଗଭରେ ଧ୍ୟାନ ରଖଇ ପ୍ରଭୁରେ,
ତା ଭିନ୍ନ ବିଶ୍ରାମ ନାହିଁ ଦେଖେ ସଂସାରରେ ।
ପ୍ରଭାସ, ଦ୍ୱାରକା ବୁଲି ଫେରିବା ବାଟରେ
ହେଲେ ଦୁଇ ସାଧୁ ବଡ଼ ଆତୁର ତୃଷାରେ ।
ପଥପାର୍ଶ୍ୱେ ଥିଲା କୂପ, ଶୁଷ୍କ, ଜଳହୀନ;
ସିଦ୍ଧଯୋଗୀ ଜ୍ଞାନେଶ୍ୱର କରିଲେ ଦର୍ଶନ ।
ଅଣିମାସିଦ୍ଧିର ବଳେ ଭେଦି କୂପତଳ,
ଅନ୍ତଃ ପୃଥ୍ୱୀରୁ ପିଇଲେ ଶୁଦ୍ଧ ମିଷ୍ଟ ଜଳ ।

ଘଟରେ ଆଣିଣ ଜଳ ନାମଦେବେ ଦେଲେ;
ସେ ଜଳ ନାମଦେବ ତ ପାନ ନାହିଁ କଲେ ।
କହିଲେ, "ପ୍ରଭୁରେ କ'ଣ ମୋର ତୃଷ୍ଣା ନାହିଁ !
ଏହି ଯାଦୁକଶି ଜଳ ପିଇବ କପାଇଁ ?"
ଭାବମଗ୍ନ ନାମଦେବ ଧ୍ୟାନେ ନିମଗନ;
ସହସା ହୋଇଲା କୂପ ଜଳେ ପରିପୂର୍ଣ୍ଣ ।
ପରିପୂର୍ଣ୍ଣ ହୋଇ କୂପ ଜଳ ଯାଏ ବହି,
ନାମଦେବ ପିଏ ପ୍ରେମେ 'ତୃପ୍ତ, ତୃପ୍ତ' କହି ।
ଜ୍ଞାନେଶ୍ୱର ନାମଦେବେ କଲେ ଆଲିଙ୍ଗନ,
ବନ୍ଧୁପ୍ରେମେ ପୁଲକିତ, ମୁଖେ 'ଧନ୍ୟ ଧନ୍ୟ' ।
ତୀର୍ଥାଟନୁ ଫେରି ଭକ୍ତ- ହୃଦୟର ଧନ,
ପଣ୍ଢରୀଶ ଶ୍ରୀଚରଣ କରି ଦରଶନ,
ଭାଷନ୍ତି, "ଥିବାରୁ ଭ୍ରମ, ବହୁତ ଭ୍ରମିଲି;
ପରିଶ୍ରମ କରି ବହୁ ତୀର୍ଥ ନିରେଖିଲି ।
ଚନ୍ଦ୍ରଭାଗାକୂଳେ କିନ୍ତୁ ରହିଥିଲା ମନ;
ଅନ୍ୟ ଦେବେ ଦେଖି କେବେ ନ ଲଗିଲା ଧ୍ୟାନ ।
ଗରୁଡ଼ଚିହ୍ନ-ଲାଞ୍ଛିତ- କେତ ଯହିଁ ନାହିଁ,
ସାଧୁମଣ୍ଡଳୀରୁ ପ୍ରେମେ ନାମ ନ ଉଠଇ,
ଯହିଁ ନାହିଁ ହରିକଥା- ଅଖଣ୍ଡ-ଅମୃତ,
କ୍ଷେତ୍ର-ନାମେ କେବେ କି ସେ ହୋଇବ କଥିତ ?
ନାମଦେବ ଯାଇଥିଲେ ଉତ୍ତର-ଭାରତେ;
ବୁଲି ବହୁ ସ୍ଥାନ ବୁଡ଼ା- ଇଲେ ଭକ୍ତି-ସ୍ରୋତେ ।
ବିଚିତ୍ର ଜୀବନ ତାଙ୍କ, ବିଚିତ୍ର ଭକତି,
ମଙ୍ଗ-ଲାଭେ ଶିଷ୍ୟ ଶତ ପାଇଲେ ସୁଗତି ।

ଅଣିମାଦ ସିଦ୍ଧି ପଦେ ଅବହେଳେ ଦଳି,
ଭକ୍ତିର ପ୍ରତିଷ୍ଠା କଲେ ଦେଶେ ଦେଶେ ବୁଲି ।
ଗୁରୁ ବିସୋବା କୃପାରୁ ଲଭି ପୂର୍ଣ୍ଣ ଜ୍ଞାନ,
ସର୍ବତ୍ର ଦେଖନ୍ତି ପ୍ରେମ- ମୟ ଭଗବାନ ।
ଥରେ କୁଟୀରରେ ତାଙ୍କ ଲାଗିଲା ଅନଳ,
ଏକ ପାଖ ଯାଏ ଜଳି, ସେତ ପ୍ରେମେ ଭୋଳ ।
ଅନ୍ୟ ପାଖୁଁ ଦ୍ରବ୍ୟସବୁ ଫିଙ୍ଗିଣ ନିଆଁରେ,
କହନ୍ତି, "ଆଜ ତ ସ୍ୱାମୀ ! ସ୍ୱଚ୍ଛ ବେଶରେ
ଦେଖାଦେଲେ, ଲାଲ ଚହ ଚହ ଶିଖାମାଳ,
ଗୃହ ଖାଇ ଯାଅ ଏଡ଼େ କ୍ଷୁଧାରେ ଆକୁଳ !
ଏକ ପାଖ ହେଲା ପ୍ରିୟ, ଆର ପାଖ ଦୋଷ
କରିଛି କି ? ଖାଅ ଖାଅ, ଦେଉଛି ଜିନିଷ
ଅନ୍ୟ ସବୁ ବସ୍ତୁ ପ୍ରତି ସମସ୍ନେହ ତାଳ,
ଆନନ୍ଦେ ଦେଉଛି ଦାସ, କରହେ କବଳ ।"
ପୋଡ଼ିଣ କୁଟୀର ପଡ଼େ ଭସ୍ମ ହୋଇ ତଳେ,
ବର୍ଷାଋତୁ, ନାହିଁ ଆଶ୍ରା, ଚିନ୍ତା ନାହିଁ ଭଲେ ।
ଚିନ୍ତା କରିବା ପାଇଁ ତ ଅଛନ୍ତି ବିଠ୍ଠଳ
ସେ ତ ତାଙ୍କ ଗେହ୍ଲା ପୁଅ, ଅତି ଅଳଅଳ ।
ପଣ୍ଡରୀଶ ନିଜେ ନିଜେ ହୋଇ ମଜୁରିଆ,
ନୂତନ କୁଟୀର ରଙ୍ଗେ କରିଦେଲେ ଠିଆ ।
କୁଟୀର ଗଢ଼ିଣ ଗୃହ କରିଲେ ଛପର,
ଦେଶେ ଦେଶେ କଥା ପ୍ରେମେ ହୋଇଲା ପ୍ରଚୁର ।
'ନାମଦେବ ଛପରିଆ' ନାମେ ପରିଚିତ,
ହୁଅନ୍ତି ବିଠ୍ଠଳ ନାଥ, ନୁହନ୍ତି ଲଜ୍ଜିତ ।

ଥରେ ନାମଦେବ ଏକ ଗ୍ରାମେ ଉପସ୍ଥିତ,
ସେ ଗ୍ରାମର ଯୋଗ୍ୟ ସ୍ଥାନ ଖୋଜିଲେ ବହୁତ ।
ଶୂନ୍ୟଗୃହ ଏକ ତାଙ୍କ ପଡ଼ିଲା ଆଖିରେ,
ରାତି କଟାଇବେ ତହିଁ ପାଞ୍ଚିଲେ ମନରେ ।
ସେ ଘରେ ବ୍ରହ୍ମରାକ୍ଷସ ଅଛି ହିଁ ନିଷ୍ଠୁର,
କେତେ ଲୋକ ତଣ୍ଟି ଚିପି ପିଇଲା ରୁଧିର ।
ଗ୍ରାମ-ଲୋକେ ମନା କଲେ ରହିବାକୁ ତହିଁ,
ନାମଦେବ ମନେ, "ଭୂତ ବେଶେ ଦେଖିବଇଁ
ପ୍ରାଣନାଥ ପଣ୍ଢରୀଶେ, ଧନ୍ୟ ଆଜ ଦିନ,
ବିଚିତ୍ର ବେଶରେ ବନ୍ଧୁ ଦେବେ ଦରଶନ ।"
ଅର୍ଦ୍ଧରାତ୍ରେ ଆସେ ଭୂତ ଅଦ୍ଭୁତ ଶରୀର,
ଦୀର୍ଘପଦ, ଦୀର୍ଘହସ୍ତ, ନଭେ ଲାଗେ ଶିର ।
ବେଶ ଦେଖି ନାମଦେବ ଭାବେ ନିମଗନ,
ନାଚି ନାଚି ମୁଖୁଁ ତାଙ୍କ ବାହାରିଲା ଗାନ :—

"ଦେଖି ଲାଖିରହେ ଆଖି ତୋର ରୂପେ ନାଥ । ଘୋଷା ।
ଭୂମିରେ ପୟର ସରଗରେ ଶିର
ଯୋଜନ ବିସ୍ତାରୀ ଆଛା ପାଇଛୁ ହାତ । ୧
ସନକ ଶଙ୍କର ନ ପାଇବେ ପାର
ଅଭିନବ ସାଜ ଆଜ କି ଅଦ୍ଭୁତ । ୨ ।
ନାମଦେବ ଭଣି ତୁ ତ ମୋର ସ୍ୱାମୀ
କେତେ ରୂପେ ପ୍ରାଣ ମୋର କରୁ ମୋହିତ । ୩ ।"

ପରାଣର ମହାଭାବେ ଭୂତ ଅନ୍ତର୍ହିତ
ଉଭା ହେଲେ ଶଙ୍ଖ-ଚକ୍ର- ଗଦା-ପଦ୍ମ-ହସ୍ତ ।

ପଣ୍ଡୁରଙ୍ଗ ହସି ହସି ରହିଛନ୍ତି ଚାହିଁ,
ଘାବେ-ଘେଲା ନାମଦେବ ଚରଣେ ଲୋଟଇ ।
ଥରେ ରୁଟି ତିଆରଣ ଗଛତଳେ ଥୋଇ,
ପ୍ରସାଦ କରିବେ ବୋଲି ନାମଦେବ ଯାଇ ।
ଫେରିଣ ଦେଖନ୍ତି ଶ୍ୱାନ ମୁଖେ ରୁଟି ଧରି,
ତାଙ୍କୁ ଦେଖି ଦ୍ରୁତପଦେ ଯାଉଛି ବାହାରି ।
ସଙ୍ଗେ ସଙ୍ଗେ ଘୃତପାତ୍ର ଧରି ନିଜହାତେ,
କହି କହି ଧାଆନ୍ତି ସେ କୁକୁର ପଶ୍ଚାତେ ।
"ପ୍ରଭୁ ! ସେ ତ ଶୁଖା ରୁଟି , ଘିଅ ମାଖି ନାହିଁ,
ତୁମକୁ ମୋ ରାଣ ! କେବେ ନ ଦିଅନ୍ତୁ ଖାଇ ।
ଘିଅ ମାଖିଦିଏ, ପରେ କରିବେ ଭୋଜନ,
ସୁଖରେ କରନ୍ତୁ ଭୋଗ, ଧନ୍ୟ ଆଜ ଦିନ !"
ଚତୁର୍ଭୁଜ ରୂପ ଦିଶେ, ନାହିଁ ତ କୁକୁର,
ତଳେ ଲୋଟି ନାମଦେବ ଧରନ୍ତି ପୟର ।
ମହାଭକ୍ତ ନାମଦେବ; ଅଶୀଏ ବରଷ
ଖେଳାଇ ପରାଭକତି ପୂତ କଲେ ଦେଶ ।
ଶେଷେ ଇଚ୍ଛାମୃତ୍ୟୁ ଲଭି ଛାଡ଼ିଲେ ଶରୀର,
ହସି ଅନାମୟଧାମେ ଗଲେ ଭକ୍ତବୀର ।

---

## ଶିବଲିଙ୍ଗ ଫୁଟିଦିଶେ ବିଶ୍ୱସାର ପୁରି

ନାଗନାଥ ଶିବକ୍ଷେତ୍ର ପ୍ରସିଦ୍ଧ ସେ ଅତି,
ଓଡ଼ଶାର କାରିଗରି ଓଡ଼ଶାମୂରତି,
ଦେବାଳୟେ ଓଡ଼ଆର ସ୍ଥାପତ୍ୟଶିଳ୍ପକଳା,
ରହିଅଛି ଗଉରବେ କାଳକାଳ ହେଲା ।

କହନ୍ତି, 'ଓଡ଼ିଆ-ନାଗ-    ନାଥ' ବୋଲି ଦେବେ,
କାରିଗରି ଧନ୍ୟ ଧନ୍ୟ    କରନ୍ତି ସରବେ ।
ପଣ୍ଡରପୁରରୁ ଅର୍ଦ୍ଧ    ଶତ କୋଶ ଦୂର,
ପ୍ରଶଂସିତ ଶିବକ୍ଷେତ୍ର    ଅତି ମନୋହର ।
ତହିଁ ଯଜୁର୍ବେଦୀ ଦ୍ୱିଜ    ଥାଏ ଘର କରି,
ସୁନା-ରୂପା-ବ୍ୟବସାୟୀ    ବୋଲାଏ ସୁନାରି ।
ବିସୋବା ସୁନାରି-ଦ୍ୱିଜ,    ଭକତ ପ୍ରଧାନ,
ସର୍ବଦେବେ ସମବୁଦ୍ଧି,    ପଣ୍ଡରୀଶେ ଧ୍ୟାନ ।
ବିଠ୍ଠଲ ବିଠ୍ଠଲ ଜିହ୍ୱା    ରଟେ ନିରନ୍ତର,
ଅତିଥି ଅଭ୍ୟାଗତ ତା    ନ ଛାଡ଼ନ୍ତି ଘର ।
ଘରେ ଅକଳନ୍ତି ଧନ,    ମନେ ଧର୍ମବୁଦ୍ଧି,
କୋଳକୁ ଗୃରି କୁମର    ପତ୍ନୀ ଅତି ସାଧ୍ୱୀ ।
ଦେଶରେ ଦୁର୍ଭିକ୍ଷ ପଡ଼େ    ନ ମିଳିଲା ଅନ୍ନ,
କ୍ଷୁଧାରେ ଚିତ୍କାର କଲେ    ଲୋକେ ନିଶି-ଦିନ ।
ବିସୋବା ଦୁଆରେ ଆସି    ଲୋକେ ହେଲେ ଜମା,
ସେ ଭାବନ୍ତି, ବିଭୁକୃପା    ଅପାର ମହିମା ।
କ୍ଷୁଧିତର ଆର୍ତ୍ତନାଦ    ମୁମୂର୍ଷୁ ଚିତ୍କାର,
ଭକତ କି ସହିପାରେ ?    ବିଦରେ ଅନ୍ତର ।
ଦିନ-ରାତି ରନ୍ଧାବଢ଼ା,    ହେଲା ଅନ୍ନଦାନ,
ଲୋକେ ଖାଇ ଫେରିଯାନ୍ତି    ହୋଇଣ ପ୍ରସନ୍ନ ।
ନିଜର ଭଣ୍ଡାରୁ ଧାନ    କ୍ରମେ ହେଲା ଶେଷ,
କିଣା ହୋଇ ଧାନ ଆସେ,    ନାହିଁ ଦୁଃଖ ଲେଶ ।
ସୁନାରୂପା ଧନଧାନ୍ୟ    ସବୁ ଯାଏ ସରି,
କ୍ଷୁଧିତକୁ ଦେବ ଅନ୍ନ,    ରହେ ବ୍ରତ ଧରି ।

ଶେଷେ ବଳା ହେଲ ଘରୁ ବାସନ କୁସନ,
ନରନାରାୟଣ ପୂଜା ଗଲେ ଅନ୍ଦିନ ।
ଖଣ୍ଡମଣ୍ଡଳରେ ଥିଲା ଯେତ୍କ ଅର୍ଥପତି,
କେତେଟା ଦିନରେ ହେଲା ଧନହୀନ ଅତି ।
ଦାତାପଣ ନାନ୍ଧ ଲୋକେ କଲେ ଆଲୋଚନା,
ବସୋବା ନ ଘେନେ ଛଳ, ନ କରେ ଶୋଚନା ।
ନରେ ନାରାୟଣ ଘରେ ସେବା କରି ବ୍ରତ,
କୁବେର ଭଣ୍ଡାର ସାରି ଭୁଲିଲା ଇଙ୍ଗିତ ।
ଗ୍ରାମ ଗ୍ରାମାନ୍ତରୁ ଆଣି ଋଣ କରି ଧନ,
ଚଳାଇଲା ଶୁଦ୍ଧମନେ ଅନ୍ନ-ବସ୍ତ୍ର ଦାନ ।
"ଦୁଇ ମୁଠି ଅନ୍ନ ମାଗୁ- ଛନ୍ତି ନାରାୟଣ,
ଦ୍ୱାରୁ କେ ଫେରାଇପାରେ ? ଯାଉନା ଜୀବନ ।"
ଧନହୀନ ଘର ଲୋକେ ନ ଦେଲେ ତ ଧନ,
ବସୋବା ପଠାଣ ଦ୍ୱାରେ ଯାଇ ମାଗେ ଋଣ ।
ପଠାଣ ତ ବସୋବାକୁ ଜାଣେ ଅର୍ଥପତି,
ହଜାରେ ଟଙ୍କାକୁ ରଖେ ବନ୍ଧକ ସମ୍ପତ୍ତି ।
ଟଙ୍କା ପାଇ ପତି-ପତ୍ନୀ- ମନରେ ହରଷ,
ସହସ୍ର ସହସ୍ର ପ୍ରାଣ କଲେ ପରିତୋଷ ।
ଖଳ ଲୋକେ ପଠାଣକୁ ବୁଝାଇଲେ ଯାଇଁ ।
ଏତେ ଟଙ୍କା କାହୁଁ ଦେବ ଖାଇବାକୁ ନାହିଁ ?
ପଠାଣ ଆସିଣ ଦ୍ୱାରେ ପଡ଼ିଲ ଧାରଣା,
ହିନ୍ଦୁଦ୍ୱାରେ ଏ କଥା ତ ବଡ଼ ଅଠିକଣା ।
ବସୋବା ଜବାବ ଦେଲେ ସାତ ଦିନ ପରେ
କରଜ ଶୋଧ କରିବେ ସୁଧ ସମେତରେ ।

ବସୋବାଙ୍କୁ ସତ୍ୟବାଦୀ ଜାଣନ୍ତି ତ ଜନ,
ସତ୍ୟ ପାଇଁ ସେତ ଦେଇ- ପାରନ୍ତି ଜୀବନ ।
ଗ୍ରାମରୁ ବହୁତ ଲୋକ କହିଲେ ବୁଝାଇ,
ପଠାଣ ଫେରିଲା ଗୃହେ ଶେଷେବୋଧ ହୋଇ ।
ଛଅ ଦିନ ଗଲା ବିତି ଭାବନ୍ତି ବସୋବା,
'ପଠାଣକୁ ଧନ ଦେବେ କେଉଁଠୁ ଆଣିବା ?'
ରାତିରେ ଭକତ କରେ ବିଭୁରେ ପ୍ରାର୍ଥନା,
"ଭବେ କିବା ଗତି ଅଛି ନାଥ ! ତୁମ ବିନା ?
ଯେବେ ଯାହା ଅଛି ଲୋଡ଼ା, ଦେଇଛ ତ ସବୁ,
ପଠାଣର ଲାଞ୍ଛନାରୁ ରଖିବନି ପ୍ରଭୁ !
ଜୀବନେ ସତ୍ୟଲଙ୍ଘନ କରି ନାହିଁ କେବେ,
ଦିଅ ମୃତ୍ୟୁ, ସତ୍ୟ ରକ୍ଷା ନ ହୋଇବ ଯେବେ ।
ଲଜ୍ଜା-ନିବାରଣ-ବାନା ଉଡ଼େ ଫରଫର,
ଯବନର ଲାଞ୍ଛନାରୁ କରନ୍ତୁ ଉଦ୍ଧାର ।
ତୁମରି ପ୍ରେରଣା ସଦା ଦେଖାଉଛି ବାଟ,
ତୁମରି କରମ କରେ ନାହିଁତ କପଟ ।"
ମହାଭାବେ ବୁଡ଼େ ଭକ୍ତ ଗଣ୍ଡେ ଅଶ୍ରୁଧାର,
ବିଭୁମୟ ଦିଶେ ବିଶ୍ୱ, ହୁଏ ଆତ୍ମହରା ।
ବସୋବାର ଘୋର ଦୁଃଖ ବିଦରେ ଅନ୍ତର,
ଗୁମାସ୍ତାର ବେଶେ ବିଭୁ ହୋଇଲେ ବାହାର ।
ଟଙ୍କା ନେଇ ପହଞ୍ଚିଲେ ଯବନ-ଦୁଆରେ,
ଯବନ ବିସ୍ମୟେ ବୁଡ଼ି ଭାବଇ ମନରେ,
ଘୋର ଏ ଦୁର୍ଭିକ୍ଷ କାଳେ କିଏ ଦେଲା ଧନ,
ମନକଥା ଜାଣି ବିଭୁ ଭାଷନ୍ତି ବଚନ ।

କୋଟିକେ ଗୋଟିଏ ଥିବେ          ଏପରି ଏସୋବାଙ୍କ ସର,
ଧୂଳି ପରି ଟଙ୍କା ବାଣ୍ଟି          ଦୈନ୍ୟ ନେଲେ ବରି ।
କୁବେର ବଇଭବ ପାଦେ          ଦୂରେ ଫିଙ୍ଗିଦେଲେ,
ନରନାରାୟଣ କଷ୍ଟ          ପରାଣେ ଘେନିଲେ ।
ସଞ୍ଚାପଣ ଥିଲେ କେବେ          ପଡ଼େ କି ଅଭାବ,
ମାଗିଦେଲେ ପାଣେ ଆସି          ଅର୍ଥ ଜମା ହେବ ।
ହଜାରି କି ଛାର ! ଲକ୍ଷ୍ମୀ          ଗଚ୍ଛାଘରୁ ଧନ,
ଇଚ୍ଛା କଲେ ଜମା ହେବ          ଫିଟୁ ତ ବଚନ ।
ଖଣ୍ଡେ ଲୋକ କଥା ଶୁଣି          ନ ସହିଲି ତର,
ପ୍ରଭୁ ସହି ନ ପାରନ୍ତି          କାହାରି ଗୁହାର ।
ନିଅ ଟଙ୍କା ଗଣି ବେଗେ          ହେଉଅଛି ଡେରି,
ରସିଦ ଲେଖିଣ ଦିଅ          ହାଣ୍ଡିନୋଟ ଚିରି ।
ବନ୍ଧୁ ବାକ୍ୟ ମଉଳିଲା          ଯବନ-ଗରବ,
ସରମ-ରକ୍ତିମା ଜଣା-          ଇଲା ଲଜ୍ଜା ଭାବ ।
କଉଡ଼ା ଦାଉଡ଼ ନେଇ ଗଣି          ରସିଦ କାଟିଲା,
ଏସୋବାରେ ସାହା ବନ୍ଧୁ,          ମନେ ବିଚାରିଲା ।
ପର ଦିନ ସ୍ନାନ ସାରି          ଗୀତା ଫିଟାଇଣ,
ହାଣ୍ଡିନୋଟ ଦେଖି ଭକ୍ତ          ବିସ୍ମୟେ ମଗନ ।
ଗୀତାପାଠ ପରେ ଯାଏ          ଯବନ ଦୁଆରେ,
କହଇ ସଖେଦେ, "ଭାଇ          କ୍ଷମା କର ମୋରେ ।
ସୁଧ-ମୂଳ ସବୁ ଟଙ୍କା          ସୁଝିଦେବ ମୁହିଁ,
ଆସିଅଛି ପାଖେ କହୁଁ          ଅବସର ପାଇଁ ।"
ଯବନ—ଏ କି କଥା କହୁଛନ୍ତି,          ଗୁମାସ୍ତା ତ ହାତେ
ଗଣି ଦେଇ ଗଲେ ଟଙ୍କା          କାଲନ୍ତର ଯେତେ !

ରସିଦ ଲେଖିଲ, ଦେଲ ହ୍ୟାଣ୍ଡନୋଟ ଚିରି,
ସାଧୁ ତୁମେ, ଦୋଷ କଲ ଟଙ୍କା ମାଗିକରି ।
ଯେତେବେଳେ ଯାହା ଟଙ୍କା ହେବ ଦରକାର,
ବିନା ହ୍ୟାଣ୍ଡନୋଟେ ଦେବି ଏକଥା ମୁକର ।
ଗୁମାସ୍ତା ହେବାର କଥା ଶୁଣିଣ ଭକତ,
ମନରେ ଭାବଇ ସବୁ ବିଭୁଙ୍କର କୃତ୍ୟ ।
ଗୃହେ ଫେରି ଗୁମାସ୍ତାରେ ପୁଛନ୍ତି ବିସୋବା,
ଗୁମାସ୍ତା କି ଜାଣେ, ହୋଇ- ଗଲା ଆବା କାବା ।
ବିଭୁଙ୍କର ଲୀଳା ସବୁ ଭାବନ୍ତି ଭକତ,
ମନେ ଘୋର ଆତ୍ମ-ଗ୍ଲାନି ହୋଇଲା ଉଦିତ ।
ମୋର ଦାସ ଲାଗି ବିଭୁ ଯବନ-ଦୁଆରେ,
ଯୋଗୀ ଋଷିରେ ଅଲଭ୍ୟ ପାଦପଦ୍ମ ଦେଲେ ।
ସାମାନ୍ୟ ଗୁମାସ୍ତା ବେଶେ ଟଙ୍କାଥଳୀ ଧରି ।
ଛି, ଛି ପ୍ରାଣନାଥେ ମୋର କଲି କେତେ ସରି ।
କେଉଁ ଜନ୍ମେ କରି କିବା ସୁକୃତ ଯବନ,
ଦୁଆରେ ପାଇଲା ବସି ବିଭୁ ଦରଶନ ।
ଆଉ ନାହିଁ, ଆଉ ନାହିଁ; ଧିକ ମୋ ସଂସାର ।
ତୁଚ୍ଛ କଥାରେ ପ୍ରଭୁଙ୍କୁ ବୁହାଇଲି ଭାର ।
ବିଷୟ ଲାଗିଲା ବିଷ, ତୁଟିଲା କାମନା,
ସଂସାର ନରକପୁର ପରି ଗଲା ଜଣା ।
ପଣ୍ଡରପୁରରେ ବିସୋବା ରଚିଲେ ଆସ୍ଥାନ,
ବିଠ୍‌ଠଲ ଅଭୟ ପଦେ ନେଲେ ସେ ଶରଣ ।
ଜ୍ଞାନେଶ୍ୱରମଣ୍ଡଳୀରେ ହେଲେ ସେ ମିଳିତ,
ସୁଖେ ଦୁଃଖେ ସମବୁଦ୍ଧି ଭଜନନିରତ ।

ଯୋଗର ଅଭ୍ୟାସେ ସିଦ୍ଧି ହୋଇଲା ସମ୍ଭବ,
ସର୍ବ ଭୂତେ ସ୍ଥିର ହେଲା ନାରାୟଣ ଭାବ ।
ବିସୋବାଙ୍କ ମୁଖବାଣୀ, "ସ୍ୱାର୍ଥୀ ମୁକ୍ତାବାଞ୍ଛ,
ଚଙ୍ଗଦେବେ ଗୁରୁ କଲେ, ଗୁଣେ ମୁଗ୍ଧ ହୋଇ ।
ସୋପାନଦେବ ମୋଠାରେ କରିଲେ କରୁଣା,
ଭବଭୟ ହେଲା ଛିନ୍ନ, ପୂରିଲା କାମନା ।
ଜ୍ଞାନେଶ୍ୱର ସିଦ୍ଧଯୋଗୀ ବିଷ୍ଣୁ-ଅବତାର,
ଦିବ୍ୟ ସଙ୍ଗଲାଭ ହେଲା କି ଭାଗ୍ୟେ ମୋହର ।"
ନାମଦେବେ ଦେଲେ ବିଭୁ ସ୍ୱପନ ଆଦେଶ,
"ବିସୋବାଙ୍କୁ ଗୁରୁ କର, ହୁଅ ଯୋଗ୍ୟ ଶିଷ୍ୟ ।"
ବିଭୁ ଆଜ୍ଞା ନାମଦେବ ପାଇ ତୃପ୍ତମନେ,
ମିଳିଲେ ଭକତିଭରେ ବିସୋବା ଚରଣେ ।
ଅଦ୍ଭୁତ ସେ ଯୋଗୀ ଶିବ- ଲିଙ୍ଗେ ପାଦ ଥୋଇ,
ଅର୍ଦ୍ଧ-ନିମିଳିତ-ନେତ୍ରେ ରହିଛନ୍ତି ଶୋଇ ।
ନାମଦେବ ପ୍ରାଣେ ଜାତ ହୁଏ ଭାବାନ୍ତର,
ମହାଯୋଗୀ ବିସୋବାରେ ହୋଇଲା ଗୋଚର ।
ବିସୋବା—ନମିସ୍ତୁ ! ନପଟ ବୁଢ଼ା ହୋଇଗଲି ମୁହିଁ,
ପାଦ ଉଠାଇବା ଶକ୍ତି ଦେହେ ଆଉ ନାହିଁ ।
ଉଠାଇଣ ପାଦ ମୋର ପାରିବୁ କି ଥୋଇ,
ସେ ସ୍ଥାନରେ ଯେଉଁଠାରେ ଶିବ ଲିଙ୍ଗ ନାହିଁ ?
ନାମଦେବ ପାଦ ଧରି ଥୋଇଦେଲେ ତଳେ,
ଶିବଲିଙ୍ଗ ଦିଶେ ତହିଁ ! ଦେଖନ୍ତି ବିହ୍ୱଳେ ।
ଫୁଟି ଦିଶେ ଶିବଲିଙ୍ଗ ବିଶ୍ୱସାରା ପୂରି,
ଅଣୁ ଭେଦି ଫୁଟିଉଠେ ଶିବଲିଙ୍ଗ ଶିରି ।

ମହାପ୍ରେମେ ନାମଦେବ    ଧରଣ ଚରଣ,
ଗୁରୁଙ୍କୁ ମାଗନ୍ତି କ୍ଷମା    ଲୋତକ-ଲୋଚନ ।
ଦୀକ୍ଷା ନେଇ ନାମଦେବ    ଜୀବନ ସାର୍ଥକ,
ନିଜ ଭଜନରେ ବର୍ଣ୍ଣି-    ଛନ୍ତି ଗୁରୁ ଟେକ !
ହେ କୃଷ୍ଣ ! ହେ ଜଗଦ୍‌ଗୁରୁ ! ଆଉ ଗୁରୁ-ଟେକ
ଅଛି କି ଏ ଦେଶେ ! ସର୍ବେ    କପଟ ନାସ୍ତିକ ।
ଗୁରୁର ମସ୍ତକ ଖାଇ    ଆଜ ଗୁରୁ ହସେ !
ଦେଶ ରସାତଳେ ଯାଏ    ପ୍ରଭୁ ! କି ନ ଦିଶେ !
ଖେଳିଯାଉ ଗୁରୁପ୍ରାଣେ    ଶୁଦ୍ଧ ଭକ୍ତିରସ,
ତେବେ ସିନା ଗୁରୁ-ଟେକ    ଦେଖିବ ଏ ଦେଶ !
ତେବେ ସିନା ନିସ୍ତରିବେ    ଗୁରୁକୃପା ପାଇ,
ଅନ୍ତେବାସି-କୁଳ ମୁଖେ    ଗୁରୁ-ଜୟ ଗାଇ ।

---

# ଜଳ-ସମାଧି

ମହାରାଷ୍ଟ୍ର-ଧର୍ମଗୁରୁ    ସିଦ୍ଧ ଜ୍ଞାନେଶ୍ୱର,
ଭକ୍ତିମାର୍ଗ-ପ୍ରବର୍ତ୍ତକ    ଯାହାର କୁମର,
ସେ ଭକ୍ତ ବିଠ୍‌ଠଲ ପନ୍ତ    ଗୋଦାବରୀତୀରେ,
ଜନ୍ମିଥିଲେ ଯଜୁର୍ବେଦୀ    ବ୍ରାହ୍ମଣଗୃହରେ ।
ଜନକ ଗୋବିନ୍ଦପନ୍ତ    ଶିଷ୍ଟ ଗୁଣବାନ;
ପିତୃ ଗୁଣେ ପୁତ୍ର ଅର-    ଜିଲେ ଶାସ୍ତ୍ରଜ୍ଞାନ ।
ଶୈଶବରୁ ମହାଜ୍ଞାନୀ    ଉଦାର ଭକତ,
ସଂସାର ଛାଡ଼ିଣ ହେଲେ    ତୀର୍ଥଯାତ୍ରାରତ ।

ବିବାହ-ବନ୍ଧନେ ବନ୍ଧ    ହେବାକୁ ସେ ମନ,
ନ ଚାହିଁଲ, ରହିଲେ ସେ    ସଦା ଉଦାସୀନ ।
ତୀର୍ଥ ବୁଲି ବୁଲି ଥରେ    ପୁନାଠାରେ ଆସି,
ସିଦ୍ଧେଶ୍ୱର ମନ୍ଦିରରେ    ରହିଲେ ଉଦାସୀ ।
କୁଲକର୍ଣ୍ଣୀ ସିଦ୍ଧ ତହିଁ    ବିଖ୍ୟାତ ଭକତ,
ରୁକ୍ମିଣୀ ତାଙ୍କର କନ୍ୟା    ସୁଶୀଳା, ମହତ ।
ବିଠ୍ଠଲଙ୍କୁ ଉପଯୁକ୍ତ    ଜାମାତାରେ ବରି,
କନ୍ୟାଦାୟରୁ ଭକତ    ସୁଖେ ହେଲେ ପାରି ।
ପତିପରାୟଣା ପତ୍ନୀ    ପାଇଲେ ବିଠ୍ଠଲ,
ସଂସାର-ବନ୍ଧନେ ପଡ଼ି    ହେଲେ କଲବଲ ।
ନିରନ୍ତର ପୂଜାଧ୍ୟାନ,    ବିଷ୍ଣୁପଦେ ରତି,
ଗୃହସ୍ଥକ୍ରିୟାକୁ ଟିକେ    ନ ଥିଲା ମତି ।
ସୁଶୀଳା ରୁକ୍ମିଣୀ ଭାବେ,    ଶୁଦ୍ଧଭକ୍ତ ଭାବ
ପତିଙ୍କ ଅନ୍ତରେ ଫୁଟୁ,    ବାଧା ସେ ନ ଦେବ ।
ପତିଙ୍କୁ ରଖିବେ ବଶେ,    ନ ବଳାଇ ମନ,
ପତି ଗୃହକର୍ମେ ସଦା    ହେଲେ ଉଦାସୀନ ।
ଥରେ ଗଙ୍ଗାସ୍ନାନେ ଯାଇ    କଲେ କାଶୀବାସ,
ରାମାନନ୍ଦ-ଶିଷ୍ୟ ହେଲେ,    ବରିଲେ ସନ୍ନ୍ୟାସ ।
ଗୃହେ ଥାଇ ବିରହିଣୀ    ରୁକ୍ମିଣୀ ସୁଶୀଳା,
ବାର ବର୍ଷ ଘୋର ତପେ    ଜୀବନ କାଟିଲା ।
ଶେଷରେ ତାଠାରେ ବିଷ୍ଣୁ    ହୋଇଲେ ପ୍ରସନ୍ନ,
ଦୁଃଖିନୀ ଦୁଃଖ ହରିବେ    ବିଷ୍ଣୁ କଲେ ମନ ।
ଆଳନ୍ଦୀ ଗ୍ରାମରେ ଦିନେ    ରୁକ୍ମିଣୀର ଘରେ,
ରାମେଶ୍ୱର ପଥେ ରାମା-    ନନ୍ଦ ପ୍ରବେଶିଲେ ।

ରୁକ୍ମିଣୀ ଚରଣ ଧରି କରଇ ପ୍ରଣତି,
ସାଧୁ ଆଶିଷ ଢାଳିଲେ, "ହୁଅ ପୁତ୍ରବତୀ" ।
ବାକ୍ୟସିଦ୍ଧ ରାମାନନ୍ଦେ ହସିଲେ ସକଳ,
ପତି ନିରୁଦ୍ଦେଷ୍ଟ, ବରେ ହେବ କିବା ଫଳ ?
ରାମାନନ୍ଦ ବୁଝିନେଲେ, ସମସ୍ତ ଘଟନା,
ରୁକ୍ମିଣୀ-ମୁଖରୁ ଭଲେ ଶୁଣିଲେ ବର୍ଣ୍ଣନା ।
ନିଃସନ୍ତାନା ଯୁବତୀକୁ ଛାଡ଼ି ଯେଉଁ ପତି,
ସନ୍ନ୍ୟାସ ନିଅଇ ବରି, ବହଇ ଦୁଷ୍କୃତି ।
ଗୁରୁଶିଷ୍ୟ ଦୁଇଠାରେ ଲାଗେ ଗୁରୁ ଦୋଷ;
ଏଥିପାଇଁ ରହିଅଛି ଶାସ୍ତ୍ରରେ ନିଦେଶ ।
ଯାହା ବନ୍ଦ କଲେ ଗୁରୁ, ବିଠ୍ଠଲ କାଶୀରେ;
'ଚୈତନ୍ୟାଶ୍ରମ' ନାମରେ ରହିଛି ଖ୍ୟାତିରେ ।
ରାମାନନ୍ଦଠାରୁ ଦୀକ୍ଷା କରିଣ ଗ୍ରହଣ,
ହୋଇଅଛି ଖ୍ୟାତନାମା, ପୂଜ୍ୟ, ମାନ୍ୟଗଣ୍ୟ ।
ରାମାନନ୍ଦ ଗଲେ କନ୍ୟା, କନ୍ୟାପିତା ଧରି,
ରାମେଶ୍ୱର ନ ଯାଇଣ ବାରଣସୀ ଫେରି ।
ଆଜ୍ଞା ଦେଲେ ଗୁରୁ, "ଶିଷ୍ୟ ଗୃହସ୍ଥ ଆଶ୍ରମେ
ତୋର ତ ରହିବା ଧର୍ମ !; ଫେରି ନିଜ ଗ୍ରାମେ ।"
ବିଠ୍ଠଲ ପାରିଲେ ନାହିଁ ଗୁରୁ-ଆଜ୍ଞା ଟାଳି,
ସନ୍ନ୍ୟାସ ଛାଡ଼ିଣ ହେଲେ ଗୃହସ୍ଥ ସଂସାରୀ ।
ଗୃହସ୍ଥର ଧର୍ମ ଧରି ସାଧନ ଭଜନେ,
ପତି-ପତ୍ନୀ କଟାଇଲେ କାଳ ଶାନ୍ତମନେ ।
ଗୃହସ୍ଥ ଆଶ୍ରମ ସର୍ବ ଆଶ୍ରମରେ ସାର,
ସକଳ ଆଶ୍ରମ ତହିଁ କରନ୍ତି ନିର୍ଭର ।

ଅଧ୍ୟୟନ, ଅଧ୍ୟାପନ, ଯଜନ, ଯାଜନ,
ଦାନ, ପ୍ରତିଗ୍ରହ ଗୃହ- ସ୍ଥର ଷଟ କର୍ମ ।
ଏହି କର୍ମ କରି ଗୃହୀ ସେବଇ ଜଗତ,
ଏହି କରମରେ ତିନି ଆଶ୍ରମ ଜୀବିତ ।
ନରନାରୀପୁଣେ ପୂଜ ଗୃହୀଁ ନିତି ନିତି,
ଧିକ୍‌କାରେ ଅଣିମା ଆଦି ସକଳ ବିଭୂତି ।
ଗୃହୀର ଆଦର, ଧର୍ମ ନିଜେ ଭଗବାନ
ପ୍ରଭୁରନ୍ତ ଅବତାର କରିଣ ଗ୍ରହଣ ।
ବିଠ୍‌ଠଲ ରୁକ୍‌ମଣୀ ଦେଖ ଗୃହଧର୍ମେ ମାତି,
ଜୀବନ ସାଧନମୟ, ପୂତ କଲେ ଅତି ।
ବିପତ୍ତି ପରେ ବିପତ୍ତି ଭକ୍ତଜନ ପାଇଁ,
ଖଞ୍ଜି ରଖିଥାନ୍ତି ଇଚ୍ଛା- ମୟ ବିଶ୍ୱସାଇଁ ।
ପୋଡ଼ିଲେ ସୁନାର ଜ୍ୟୋତି ହୁଏ ପରିସ୍ଫୁଟ,
ଭକତର ଯଶ ଦୁଃଖେ ହୁଅଇ ପ୍ରକଟ ।
ସନ୍ନ୍ୟାସୀର ଗୃହୀ ହେବା ଅତି ଅଘଟନ,
ଉପରେ ପଡ଼ିଲା ଆସି ସମାଜ-ପୀଡ଼ନ ।
ଏ ତ ମହା ବିଡ଼ମ୍ବନା, ନିନ୍ଦନୀୟ ଅତି,
ଆଶ୍ରମରେ ବିଶୃଙ୍ଖଳା, ଲୋକେ ଅପଖ୍ୟାତି ।
ସନ୍ନ୍ୟାସୀ ଆଶ୍ରମ ପରେ ଏ ଘୋର କଳଙ୍କ !
ନାନା କଥା କହି ଛି ଛି କଲେ ଯେତେ ଲୋକ ।
ସମାଜରୁ ବହିଷ୍କୃତ ହୋଇଲେ ଦମ୍ପତି,
ଦିନୁ ଦିନ ବଢ଼ିଗଲା ଲୋକେ ଅପଖ୍ୟାତି ।
ନିନ୍ଦା ପ୍ରଶଂସାରେ ତିଳେ ନୋହି ବିଚଳିତ,
ଭକ୍ତପ୍ରାଣ ହେଲା ଦୃଢ଼, ସୁଗମ୍ଭୀର, ଶାନ୍ତ ।

ଶାସ୍ତ୍ରାଧ୍ୟୟନ, ଭଜନ, ଈଶ୍ୱର-ଚିନ୍ତନ,
ନିତ୍ୟାଧରେ ଚଳି, କ୍ରମେ ବିଶୁଦ୍ଧ ପରାଣ ।
ପତିଙ୍କ ଶୁଦ୍ଧସାଧନା, ପରାଣଦୃଢ଼ତା,
ମହତ୍ତ୍ୱ, ଦେବତ୍ୱ ଦେଖି ମୁଗ୍ଧ ପତିବ୍ରତା ।
ପ୍ରେମ-ଅଶ୍ରୁ ତାଙ୍କ ଧନ୍ୟ ମଣଇ ଜୀବନ,
ସାର କଲା, ପତିଦେବ ଚରଣ-ପୂଜନ ।
ଗୃହସ୍ଥ ଆସନେ ଶୁଦ୍ଧ ଗୃହ କର୍ମେ ରହି,
ଏ ଯୋଗୀ ଏ ଯୋଗୀଶ୍ୱରୀ ମଣ୍ଡିଦେଲେ ମହୀ !
ଏ ଘୋର ତପସ୍ୟା କ୍ରମେ ଧଇଲା ତା ଫଳ,
ଚାରି ପୁତ୍ର-ରତ୍ନେ ଗୃହ ଦିଶିଲା ଉଜ୍ଜ୍ୱଳ ।
ନିବୃତ୍ତି ପ୍ରଥମ, ଦୁଜେ ସିଦ୍ଧ ଜ୍ଞାନେଶ୍ୱର,
ସୋପାନ ତୃତୀୟ, ପୁଣି ଶେଷେ କନ୍ୟାସାର ।
ତାକୁ ତାକୁ ବଳି ସର୍ବେ ସାଧନେ, ଭଜନେ,
ଜ୍ଞାନ-ଗଉରବେ ଗଣା ହେଲେ ଜଣେ ଜଣେ ।
ସିଦ୍ଧ ସାଧକଙ୍କ ମଧ୍ୟେ ପାଇ ଉଚ୍ଚେ ସ୍ଥାନ,
ଭାରତଭୂମିକୁ କଲେ ପବିତ୍ର ମହାନ ।
ପିଲାଏ କୁଶାଗ୍ର-ବୁଦ୍ଧି, ଜୀବନ୍ମୁକ୍ତ ପିତା,
ଶାସ୍ତ୍ରେ ଅଗାଧ ପାଣ୍ଡିତ୍ୟ, ମୁକ୍ତିମାର୍ଗଜ୍ଞାତା ।
ଦୁଇ ପତ୍ରୁ ତୁଳସୀର ମହକଇ ବାସ,
ପିଲାଙ୍କୁ ସର୍ବେ ଦେଲେ ଭବିଷ୍ୟ ଆଭାସ ।
ଶୈଶବରୁ ବିଶ୍ୱପ୍ରେମ ହେଲା ଅଙ୍କୁରିତ,
ଜ୍ଞାନ ଅରଜନେ ହେଲା ପୁଷ୍ପିତ, ଫଳିତ ।
ଉପନୟନରେ ବାଧା ସମାଜରୁ ପାଇ,
ସନ୍ନ୍ୟାସପଥେ ସରବେ ଯୋଗୀଶ୍ରେଷ୍ଠ ହୋଇ ।

କନ୍ୟା ମୁକ୍ତାବାଈ ହେଲେ    ମହାଯୋଗୀଶ୍ୱରୀ,
ଗୁରୁ ଗୃହଦେବେ ଗଲେ    ବହୁ ଗୁଣେ ବଳି ।
ସମାଜପୀଡ଼ନ ଧରେ    ସୁଧାମୟ ଫଳ,
ବିକଶି ହସିଲ ଦେଶେ    ଯୋଗିପରିବାର ।
    ପିତା ତ ସନ୍ନ୍ୟାସୀ ଯୋଗୀ    ନ ଥିଲା ସମ୍ପତ୍ତି,
ଘୋର ଦୈନ୍ୟ ମଧ୍ୟେ ଆଶ୍ରା    ଥିଲା ଭିକ୍ଷାବୃତ୍ତି ।
ସମାଜପୀଡ଼ନ ଫଳେ    ଭିକ୍ଷା ନ ମିଳିଲା,
ବନଜାତ ଫଳ, ମୂଳ,    ଶାକ ଖାଦ୍ୟ ହେଲା ।
ଜଳପାନେ ପରିବାର    କେବେ କାଟେ କାଳ,
ଆତ୍ମାନନ୍ଦେ ମଗ୍ନ ସର୍ବେ,    ବିଭୁରେ ନିର୍ଭର ।
ପୋଡ଼ା ପେଟ ପାଇଁ ଲୋକ    ହୁଏ ହଟହଟା,
ସେଥିପାଇଁ ହଣାହଣି,    ଯେତେ ମାରପିଟା ।
ଉଦର-ଆଶ୍ରୟେ କାମ    ଉଠେ ଉଛେ ଜଳି,
ଭୂଖଣ୍ଡିକ ପେଟ ବିଶ୍ୱ,    ବିଭବେ ନ ପୂରି ।
ଦୁର୍ବାର ଗ୍ରାସମା ଲୀଳା    ଶାନ୍ତ ଯୋଗୀଜନ,
ମାୟାର ମୂଳ ସେ ଜାଣି    କରନ୍ତି ନମନ ।
ତିନି ପୁତ୍ର କନ୍ୟା ମୁକ୍ତାଁ    କରି ଜିହ୍ୱାବଶ,
ଶୈଶବରୁ ଆରମ୍ଭିଲେ    କଠୋର ସନ୍ନ୍ୟାସ ।
ଉପନୟନ ସଂସ୍କାର    ସପ୍ତମ ବରଷେ,
ଜ୍ୟେଷ୍ଠ ପୁତ୍ର ନିବୃତ୍ତିର    ଜନକ ମନାସେ ।
ବ୍ରାହ୍ମଣସମାଜେ ବହୁ    କଲେକ ପ୍ରାର୍ଥନା,
ସର୍ବଚେଷ୍ଟା ହେଲା ବ୍ୟର୍ଥ,    ଦ୍ୱିଜେ କଲେ ମନା ।
ବିଭୁରେ ନିର୍ଭର କରି    ଭକ୍ତ ପରିବାର,
ଗ୍ରାମୁଁ ଗ୍ରାମାନ୍ତର ଯିବା    କରିନେଲେ ସାର ।

ମଧ୍ୟରାତେ କୁଶାବର୍ତ୍ତେ ସ୍ନାନ ଶୌଚ ସାରି,
ପରିବାର ବ୍ରହ୍ମଗିରି ପରିକ୍ରମା କରି ।
ଅଞ୍ଜନା-ପର୍ବତ-ପୃଷ୍ଠ ଗୁମ୍ଫା ମଧ୍ୟେ ଯାଇ,
ଭେଟି ଯୋଗୀଶ୍ରେଷ୍ଠ ଗୁରୁ ପରିତୃପ୍ତ ହୋଇ ।
ଆଚାର୍ଯ୍ୟ ଗହ୍ୱନୀନାଥ କଲେକ ସ୍ୱୀକାର,
ନିବୃତ୍ତିରେ ହର୍ଷେ ଦୀକ୍ଷା ଦେଲେ ଯୋଗୀବର ।
‘ରାମକୃଷ୍ଣହରି’ ମନ୍ତ୍ର ଶିଷ୍ୟ କର୍ଣ୍ଣେ ଦେଲେ,
କୃଷ୍ଣୋପାସନା ପ୍ରଚାର କର ତୁ ବୋଇଲେ ।
ଗୁରୁକୃପାବଳେ ଖେଳେ ଶିଷ୍ୟରେ ବିଭୂତି,
ନାଥ ସମ୍ପ୍ରଦାୟୁ ଗଢ଼ି, ବିଖ୍ୟାତ ନିବୃତ୍ତି ।
ସୋଦର ସୋଦରୀ ଚାରି ସନ୍ନ୍ୟାସ ଆଦରି,
ଆଜନ୍ମ ରହିଲେ ହୋଇ କୁମାର କୁମାରୀ ।
ପଣ୍ଡୁରଙ୍ଗ ବିଠ୍‌ଠଲଙ୍କୁ କରିଣ ଆଶ୍ରୟୁ,
ଗଢ଼ିଲେ ମଣ୍ଡଳୀ ମହା- ଯୋଗୀ ସମ୍ପ୍ରଦାୟୁ ।
ବିଠ୍‌ଠଲ ପନ୍ତ ସସ୍ତ୍ରୀକ ପ୍ରୟାଗ ଚଳିଲେ,
ପୂତ ଜଳେ ପତିପତ୍ନୀ ସମାଧି ରଚିଲେ ।
ଯୋଗପନ୍ଥା ଧରି ତୀର୍ଥେ ତେଜିଲେ ଜୀବନ,
ଅନାମୟପଥେ ଗଲେ ବୈକୁଣ୍ଠ ଭୁବନ ।

—•——

# ମହିଷ ମନ୍ତ୍ର ଗାନକଲା

ପୁଣ୍ୟ କୃଷ୍ଣ ଜନ୍ମାଷ୍ଟମୀ    ଅର୍ଦ୍ଧରାତ୍ର ବେଳେ,
ମାତୃଗର୍ଭୁ ଜନ୍ମି ଜ୍ଞାନ    ଧରଣୀ ଛୁଇଁଲେ ।
ଶିଶୁର ଶ୍ରୀଅଙ୍ଗେ ଦେଖି    ଶଙ୍ଖଚକ୍ର-ଚିହ୍ନ,
ଅନେକେ କହିଲେ ଜାତ    ହେଲେ ଜନାର୍ଦ୍ଦନ ।
ବିଠଲ ପନ୍ତ ତ ଯୋଗୀ,    ରୁକ୍ମଣୀ ଯୋଗିନୀ,
ତନୟ ଜନମି ରୂପେ    ମୋହିଲା ଅବନୀ ।
ରୂପୁଁ ବଳ ଜ୍ଞାନେ ଜ୍ଞାନ    ବିକଶିବ ଦିନେ,
ଲୋକେ ଜାଣିପାରିଥିଲେ    ତାର ଜନ୍ମକ୍ଷଣେ ।
ପିତା ମାତା ତପଃ ଫଳ    ମୂର୍ତ୍ତି ପରବ୍ରହ୍ମ,
ଅବତରିଲା କି !ଲୋକେ    ହେଲେ କୁହାକୁହି ।
ଜ୍ୟେଷ୍ଠ ନିବୃତ୍ତିକୁ ଯେବେ    ସାତ ବର୍ଷ ହେଲା,
ସନ୍ନ୍ୟାସ ବରଣ କରି    ନାଥ ବୋଲାଇଲା ।
ଜ୍ଞାନର ବୟସ ପାଞ୍ଚ,    ସୋପାନର ଗୁରୁ ।
ମୁକୁତାର ତିନବର୍ଷେ    ପିତା ମାତା ଭାଳି,
"ଆଉ ଏଣିକି ସଂସାରେ    ରହି କାର୍ଯ୍ୟ ନାହିଁ,
ଭାଇ ଭଉଣୀ ତିନିଙ୍କୁ    ନିବୃତ୍ତିକୁ ଦେଇ ।
ସଂସାରୁ ନିବୃତ୍ତ ହୋଇ    ଯିବା ତୀର୍ଥ ବୁଲି,
ପରାର୍ଥ କରିବା ସ୍ଥିର    ଯୋଗପନ୍ଥା ଧରି ।"
ପିତା ମାତା ଗଲେ ଗଙ୍ଗା    ଯମୁନା ସଙ୍ଗମେ,
ନିଷ୍ଠାରେ ଜଳସମାଧି    ରଚିଲେ ଧରମେ ।
ବରଜି ନର ଶରୀର    ସରଗ-ସରଣୀ
ଧରି ଗଲେ ଦିବ୍ୟଲୋକେ    ପତି ପତ୍ନୀ ବେନି ।

ଗୃହେଷ୍ଟି ଶିଶୁ ସନ୍ତାନ    ପଣ୍ଡୁରଙ୍ଗ ପାଶେ
ରହିଲେ ଶୈଶବୁଁ ବଶି    କଠୋର ସନ୍ନ୍ୟାସେ
ଦୁଇ ପତ୍ରରୁ ତୁଳସୀ    ଫୁଟାଏ ତା ବାସ,
ଶୁଭ ଦିନ ସୂଚାଏ ତ    ଉଷା ମଧୁ ହାସ,
ପାଣ୍ଡିତ୍ୟ ଗୌରବ ଫୁଟେ    ବିନମ୍ର ବଚନେ,
ଗୃହିଣୀ ଭଙ୍ଗରେ ଗୁଣୀ    ମନ ପ୍ରାଣ କିଣେ ।
ଛେଉଣ୍ଡ ଭଉଣୀ ଭାଇ    ଚରିତ୍ର-ବିଭବେ,
ମଧୁର ବଚନେ ଗୁଣେ    ମୋହିଲେ ସରବେ ।
ବିଶ୍ୱନାଥ ପଣ୍ଡୁରଙ୍ଗେ    ଅନାଥ ସନ୍ତାନ,
ପ୍ରାଣନାଥ କଲେ ସୁଖେ    ଦେଇ ପ୍ରାଣ ମନ ।
ବାଲ୍ୟକାଳୁ ଜଣାଗଲ    ମହତ୍ତ୍ୱ ସରବେ,
ଗୁରୁ କର୍ତ୍ତବ୍ୟ ସାଧନେ    ଆସିଛନ୍ତି ଭବେ ।
ସମାନ୍ୟ ଭିକ୍ଷାରେ ଯେବା    ମିଳଇ ତଣ୍ଡୁଳ,
ସେଥିରେ କାଟନ୍ତି ସୁଖେ    ଗୃହ ପ୍ରାଣୀ କାଳ ।
ଭଜନ, କୀର୍ତ୍ତନ ଆଉ    ଶାସ୍ତ୍ର-ଅଧ୍ୟୟନ,
ହୁଏ ନିତ୍ୟ ନିଷ୍ଠା ସହ    ବିଠ୍‌ଠଲ ଅର୍ଚ୍ଚନ ।
ସତତ ସନ୍ତୋଷ ପ୍ରାଣ,    ନିରଳସ ଅତି,
ସେବାତତ୍ପର ସରବେ,    ନାରାୟଣେ ମତି ।
ଏ ଶୁଦ୍ଧ ସାଧନ ବଳେ    ଅନାଥ ସନ୍ତତି,
ତରୁଣ ବୟସେ ହେଲେ    ଶୁଦ୍ଧ, ବୁଦ୍ଧ, ଯତି ।
ଜ୍ଞାନେଶ୍ୱର ମହାଜ୍ଞାନୀ    ସପ୍ତମ ବରଷେ
ଉପନୟନ ସଂସ୍କାର    ଇଚ୍ଛିଲେ ହରଷେ ।
ସନ୍ନ୍ୟାସୀ ସନ୍ତାନେ ନାହିଁ    ତହିଁ ଅଧିକାର,
ମୂଳରୁ ସମାଜ କଲା    ତାହା ଅସ୍ୱୀକାର ।

ବିମଳ ଜ୍ଞାନ-ବିଭବ ଶୁଦ୍ଧ ବିଷ୍ଣୁଭାବ,
ଚତୁର୍ଦ୍ଦିଗେ ବିସ୍ତାରିଲା ପ୍ରବଳ ପ୍ରଭାବ ।
ପିତା ମାତା ପୁଣ୍ୟପଥେ ମରଣ ବରଣ
କରି ତରିଲାଇ ଦେଲେ ସହସ୍ର ପରାଣ ।
ଗ୍ରାମେ ଦ୍ୱିଜଗଣେ ଦୁଃଖୀ ସମବେଦନାରେ,
କହିଲେ, "ଯାଅରେ ବାପା ପୈଠଣ ସଭରେ ।
ସେଠାର ଶାସ୍ତ୍ରଜ୍ଞ ବିଜ୍ଞ ଦେବେ ଯେଉଁ ମତ,
ଆମର ଏଠାରେ ତାହା ହୋଇବ ଗୃହୀତ ।"
ଚାରିହେଁ ଚଳିଲେ ପଥେ କରି ସଂକୀର୍ତ୍ତନ,
ବିଷ୍ଣୁନାମ ମଧୁସ୍ୱରେ ଶୁଣି ତୃପ୍ତ ଜନ ।
ବହୁ ଦିନେ ପୈଠଣରେ ହୋଇଲେ ପ୍ରବେଶ,
ଶାସ୍ତ୍ରଜ୍ଞ ପଣ୍ଡିତଗଣେ କହିଲେ ଉଦ୍ଦେଶ୍ୟ ।
ସେଥିପାଇଁ ସମାରୋହେ ହେଲା ସମ୍ମିଳନୀ,
କଥା ସ୍ଥିର ହେଲା ତହିଁ ବହୁ ମତ ଘେନି ।
"ସନ୍ନ୍ୟାସୀ ସନ୍ତାନେ ନାହିଁ ଶୁଦ୍ଧି ଅଧିକାର,
ଗୋଟିଏ ଉପାୟ, ଯଦି କରି ପରିହାର
ଲଜ୍ଜା, ଦ୍ୱେଷ, ସର୍ବଭୂତେ ନାରାୟଣ ଜ୍ଞାନ
ସ୍ଥିର ହୁଏ, ଯଦି ହୋଇ ତନ୍ମୟ ପରାଣ
ପ୍ରଣମେ ପ୍ରେମରେ ଶ୍ୱାନେ ଗୋ, ଗର୍ଦ୍ଧ, ଚଣ୍ଡାଳେ
ମହାଭାବେ; ତେବେ ଶୁଦ୍ଧି ହୋଇପାରେ ତାରେ ।"
ଭାଇ ଭଉଣୀଙ୍କ ମନେ ଅପାର ଆନନ୍ଦ,
କହିଲେ, "ବ୍ୟବସ୍ଥା ଶୁଭ, ନୁହେ କିଛି ମନ୍ଦ ।"
ଜ୍ଞାନେଶ୍ୱର ମୁଖୁଁ ସ୍ଫୁରେ ବଚନ ଗମ୍ଭୀର,
"ବିଜ୍ଞମଣ୍ଡଳୀଙ୍କ କଥା କରୁଛି ସ୍ୱୀକାର ।"

ଗୃହରେହେଁ ଯାଇ ଭଉଣୀ  ଆସୁଛନ୍ତି ଫେରି
ସଖୀରୁ, 'ଦୁଷ୍ଟ କି କେହି  କହେ ରଙ୍ଗ କରି ।
“କି ନାମ ତୋର ବାଳକ?”  ମିଳିଲା ଉତ୍ତର,
“ଜ୍ଞାନେଶ୍ୱର !” “ତେବେ ବାବା କରୁ ତ ବଗୁର ।”
କହେ ଆନ, ନିକଟରେ  ମଇଁଷି ଦେଖାଇ,

“ଏଇ ଆମ ଜ୍ଞାନେଶ୍ୱର,  ଦିନସାରା ଜ୍ଞାନ,
ବୋଝ ବହେ, ତୁମେ କ'ଣ  ଏହାର ସମାନ ?”
ଜ୍ଞାନ—ହଁ ହଁ, ଅବିକଳ ସେଇ !  ତାହାର ମୋହର
ଏକ ଆତ୍ମା, ଭେଦାଭେଦ  ନାହିଁ ମୋର ତାର ।
ଏ କଥାରେ କେହି ଜଣେ  ମଇଁଷି ପିଠିରେ,
ଜୋରରେ ଦି ଘୁଷ ପିଟି  କହେ ବିଦ୍ରୂପରେ,
“ଏ ଘୁଷ ତ ତୁମ ପିଠି  ପରେ ଥିବ ପଡ଼ି !”
ଦି ଦାଗ ଦେଖାଏ ଜ୍ଞାନ  ଦେହୁଁ ବସ୍ତ୍ର ଫେଡ଼ି ।
ଦୁଷ୍ଟ କେହୁ କହେ ପୁଣି  ନ ପଡ଼ି ମଉନ,
“କହୁଛ ତ ଏ ମଇଁଷି  ଠିକ ତୁମ ଭଳି !
ତୁମରି ଜ୍ଞାନାଲୋଚନା  ଫୁଟାଅ ତା ମୁଖେ !
କୃତାର୍ଥ କର ଈଶ୍ୱର !  ନୟନେ ମୁଁ ଦେଖେ ।
ଜ୍ଞାନଦେବ ମଇଁଷିର  ନିକଟକୁ ଯାଇ,
ପିଠିରେ ମଉନେ ନିଜ  କର ଦେଲେ ଥୋଇ ।
ମଇଁଷି ପାଟିରୁ ଫୁଟେ  ଓଁକାର ଶବଦ,
ବେଦମନ୍ତ୍ର ଉଚ୍ଚାରଣ;  ଜନତା ସ୍ତବଧ ।
'ଧନ୍ୟ ଧନ୍ୟ' କଲେ ଲୋକ  ବାଳକକୁ ଗୁହିଁ,
କହିଲେ, “ଦେବତା କି ଏ”  ଅଛି ଜନ୍ମ ନେଇ ।”

ଜନୈକ ବ୍ରାହ୍ମଣ କର- ଥିଲା ନିମନ୍ତ୍ରଣ,
ପିତୃଶ୍ରାଦ୍ଧ ଅର୍ଥେ ଶତା- ଧିକ ଦ୍ୱିଜଗଣ ।
ଜ୍ଞାନେଶ୍ୱର ଯାଇଥିଲେ ନିମନ୍ତ୍ରଣ ପାଇ;
ଧ୍ୟାନେ ଡାକଲେ ପିତୃଙ୍କୁ 'ଆଗନ୍ତବ୍ୟଂ' କହି ।
ସ୍ୱଶରୀରେ ଦେଖାଦେଲେ ଆସି ପିତୃଲୋକ,
କରିଲେ ଭୋଜନ, ନେଲେ ପ୍ରୀତି ପିଣ୍ଡୋଦକ ।
ଅଦ୍ଭୁତ ସାମର୍ଥ୍ୟ ଦେଖି ପୈଠଣ ବ୍ରାହ୍ମଣେ,
ମୁଗ୍ଧ ହୋଇ କଲେ ନତ ଆସି ଜଣେ ଜଣେ ।
ଶୁଣିଲେ ଆଧ୍ୟାତ୍ମ ଚର୍ଚ୍ଚା, ନାମ-ସଂକୀର୍ତ୍ତନ,
ଶୁଦ୍ଧିପତ୍ର ଲେଖିଦେଲେ ହୋଇ ପ୍ରୀତମନ ।
ଅତି ନମ୍ରଭାବେ ଜ୍ଞାନେ କରିଣ ଆଦର
ଧନ୍ୟ କରିଲେ ଜୀବନ ସୁସଙ୍ଗେ ତାଙ୍କର ।
ଭାଇ ଭଉଣୀଏ ରହି ତହିଁ କିଛି ଦିନ,
ଗୋଦାବରୀସ୍ନାନ ପରେ ଶାସ୍ତ୍ର ଆଲୋଚନ,
ପୁରାଣପାଠ କୀର୍ତ୍ତନ, ବେଦ ବ୍ୟାଖ୍ୟା କରି,
ମୁକ୍ତିମାର୍ଗ ପରିଷ୍କାର କଲେକ ସବୁରି ।
ଯୋଗବାଶିଷ୍ଠ, ଶଙ୍କର ଭାଷ୍ୟ, ଭାଗବତ,
ଏହିଠାରେ ଜ୍ଞାନେଶ୍ୱର କରିଣ ଆୟତ୍ତ,
ନିଜକୃତ ଗ୍ରନ୍ଥାଦିର ଭୂମିକା ତିଆରି,
ନେବାସେ ଗୃହହେଁ ଗଲେ ଶୁଦ୍ଧିପତ୍ର ଧରି ।
ସେଠାରେ କେତେକ ଦିନ ରହି ଜ୍ଞାନେଶ୍ୱର,
ଗୂଢ଼ ଧର୍ମଗ୍ରନ୍ଥ ଲେଖି ହୋଇଲେ ଅମର ।
'ଭାବାର୍ଥ ଦୀପିକା' ଆଉ 'ଅମୃତାନୁଭବ',
କାଳ କାଳ ଶାସ୍ତ୍ରପୀଠେ ଆଦର ପାଇବ ।

ବାଳକ-ସନ୍ନ୍ୟାସୀ ଯେତେ    କଲେ ଅଦଭୁତ,
ଜ୍ଞାନେଶ୍ୱର ଗୀତା-ଭାଷ୍ୟ    ସବୁରେ ମହତ ।
ତାପରେ ଭାଇ ଭଉଣୀ    ଦଳ ବଳ ଧରି,
ବାହାରିଲେ ସମାରୋହେ    ତୀର୍ଥଯାତ୍ରା କରି ।
ସଙ୍ଗେ ବିଶୋବା ଖେଚର,    ଗୋରା କୁମ୍ଭକାର,
ନରହରି, ଚୋଖା, ମେଳା    ଆଦି ଭକ୍ତବର ।
ପଣ୍ଢରପୁରେ ବିଠ୍‌ଠଲ    ଦରଶନ କରି,
ପରମ ଭକତ ନାମ-    ଦେବେ ସଙ୍ଗେ ଧରି,
ପୂର୍ଣ୍ଣ ହେଲେ ଜ୍ଞାନେଶ୍ୱର    ଭକତମଣ୍ଡଳ ।
ତୀର୍ଥୁଁ ତୀର୍ଥେ ସମାରୋହେ    ବୁଲିଲେ ସକଳ ।
ଶାସ୍ତ୍ର-ଆଲୋଚନା, ଜ୍ଞାନ-    ଉପଦେଶ -ଦାନ,
କରି ଜନେ ମୁକ୍ତିମାର୍ଗ    କଲେ ପ୍ରଦର୍ଶନ ।
ଉଜ୍ଜୟିନୀ, କାଶୀ ,ଗୟା,    ଅଯୋଧ୍ୟା, ପ୍ରୟାଗ,
ହୃଷୀକେଶ, ବୃନ୍ଦାବନ,    ଗୋକୁଳ, ସୁଭଗ,
ବଦରିକା,ଜଗନ୍ନାଥ,    ମର୍ତ୍ତ୍ୟ-ବଇକୁଣ୍ଠ,
ଦେଖି ଦେଖି ଭାରତର    ସବୁ ପୁଣ୍ୟପୀଠ,
ପଣ୍ଢରପୁର ଫେରିଲେ    ସୁଖେ ଯୋଗୀଦଳ,
ଯଶ ସୌରଭ ଖେଳିଲା    ଭାରତମଣ୍ଡଳ ।
ଆର୍ତ୍ତ, ଜିଜ୍ଞାସୁ, ଅର୍ଥାର୍ଥୀ,    ଜ୍ଞାନୀ ଚାରି ଭକ୍ତ,
ଭାଇ ଭଉଣୀଙ୍କୁ ଦେଖି    ହୁଅନ୍ତି କୃତାର୍ଥ ।
ସକଳ ଶ୍ରେଣୀର ଯୋଗୀ,    ତପସ୍ୱୀ, ସାଧକ,
ଗୂଢ଼-ତତ୍ତ୍ୱ-ବ୍ୟାଖ୍ୟା ଶୁଣି    ହୁଅନ୍ତି ଅବାକ ।
ଗୃହୀ ଯୋଗୀ, ଯୋଗୀଶ୍ୱର    ପାଣ୍ଡୁରଙ୍ଗ ପୁରୀ
ବଢ଼ାଇଣ ଟେକ, କଲେ    ବଇକୁଣ୍ଠ ସରି ।

ଏକବିଂଶ ବର୍ଷ ଯୋଗି- ଶ୍ରେଷ୍ଠ ଜ୍ଞାନେଶ୍ୱର,
ଜୀବନ୍ତ ସମାଧି ନେଇ ଛାଡ଼ିଲେ ଶରୀର ।
ତାହା ପରବର୍ଷ ଅନ୍ୟ ସୋଦର ସୋଦରା,
ଇଚ୍ଛା ମୃତ୍ୟୁ ବର ନେଇ, ଛାଡ଼ିଲେ ଏ ଧରା !
ଭାରତ ଗଗନେ ଚଣ୍ଡ ମାର୍ତ୍ତଣ୍ଡ ସମାନ,
ବିଭାସିଣ ଗଲେ ଶେଷେ ବୈକୁଣ୍ଠ-ଭୁବନ !
ଅଲଟ ଧନର ପାଇଁ ସରଗୁଁ ଦେବତା,
ଆସି ମର୍ତ୍ତ୍ୟେ ଗଲେ କରି କେତେ କେତେ କଥା !
ସକାଳେ ଫୁଟିଣ ପଛେ ସଞ୍ଜରେ ମଉଳୁ,
ଅନ୍ତର-ସୌରଭେ ଶତ ମନପ୍ରାଣ ହରୁ ।
ସେହି ଏକା ଧର୍ମଜୀବୀ ସେହି ତ ଅମର,
ଯା ସୌରଭ ବଢ଼ି ଯାଏ ତେଜିଲେ ଶରୀର ।

---

କଟକ ସତ୍ୟବାଦୀ ପ୍ରେସରେ ଶ୍ରୀ ଉଦୟନାଥ ଷଡ଼ଙ୍ଗୀଙ୍କଦ୍ୱାରା ମୁଦ୍ରିତ

